ଅମର ଜୀବନୀମାଳା

# କର୍ମବୀର ଗୌରୀଶଙ୍କର

ଲେଖକ :—
ଲାଲ ନଗେନ୍ଦ୍ର କୁମାର ରାୟ

ପ୍ରାପ୍ତିସ୍ଥାନ :—
ଦି ଉତ୍କଳ ଷ୍ଟୋର୍ସ
ବାଲୁବଜାର, କଟକ—୨

# କର୍ମବୀର ଗୌରୀଶଙ୍କର

ଓଡ଼ିଶା ଇଂରେଜ ଦଖଲକୁ ଆସିବାର ପହିଲ ୫୦ ବର୍ଷ ମଧ୍ୟରେ ସବୁ ବିଷୟରେ ପଛରେ ପଡ଼ି ରହିଥିଲା । ଗୋରା ହାକିମମାନେ ନିଜର କାମ ସୁବିଧା ପାଇଁ ବଙ୍ଗ ଦେଶରୁ ଅଧା ପାଠୁଆ ବଙ୍ଗାଳୀ ଆଣୁଥିଲେ । ଜମିଦାରୀ ପ୍ରଭୃତି ବିଷୟ ବାବଦରେ କଲିକତାରେ ନିଲାମ ହେଉଥିବାରୁ ବଙ୍ଗ ଦେଶର ଲୋକେ ସେଥିରୁ ଜମିଦାରୀ ଶସ୍ତାରେ କିଣି ନିଜର ନାଏବ ଆଦି ନିଜ ଦେଶରୁ ଆଣୁଥିଲେ । ଏଠାରେ ଶହଶହ ବର୍ଷ ପୂର୍ବରୁ ଯେଉଁସବୁ ବଙ୍ଗାଳୀ ଆସି ସ୍ଥାୟୀ ବାସିନ୍ଦା ହୋଇଥିଲେ ସେମାନେ ମଧ୍ୟ ଶିକ୍ଷା ଦୀକ୍ଷାରେ ବିଶେଷ ଉନ୍ନତ ନଥିଲେ । ଇଂରେଜୀ ପଢ଼ିବା ପାଇଁ ଉଚ୍ଚ ବିଦ୍ୟାଳୟମାନ ନଥିଲା । ଯାହା ଥିଲା ତାହା ଅବଧାନଙ୍କ ଚାହାଳୀ କିମ୍ବା ମୁସଲମାନ-ମାନଙ୍କର ମକ୍ତବ ।

୧୮୨୨ ଖ୍ରୀଷ୍ଟାବ୍ଦରୁ ଶ୍ରୀରାମପୁରର ପାଦ୍ରୀମାନେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପାଇଁ କଟକରେ ଛାପାଖାନାଟିଏ ଏବଂ ଅନ୍ୟ ଅନେକ ଚେଷ୍ଟା କରୁଥିଲେ ମଧ୍ୟ ବିଶେଷ କିଛି ଫଳ ହେଉ ନଥିଲା । ଓଡ଼ିଆରେ ଯେଉଁ ସବୁ ପୁରାଣ ଶାସ୍ତ୍ର ଥିଲା ତାହା ତାଳପତ୍ର ପୋଥି ଆକାରରେ ଥିଲା ଏବଂ ସର୍ବସାଧାରଣ ତାହା ପଢ଼ି ପାରୁ ନଥିଲେ ।

ଦେଶର ଯେତେବେଳେ ଏହିପରି ଅତି ଅବନତ ଅବସ୍ଥା ସେତେବେଳେ ଗୌରୀଶଙ୍କର ଜନ୍ମ ହୋଇଥିଲେ । କଟକ ଜିଲ୍ଲା ଅସୁରେଶ୍ୱର ପ୍ରଗଣାରେ ଦକ୍ଷିଣ ପଡ଼ା ବୋଲି ଗୋଟିଏ ଗ୍ରାମ ଅଛି । ଏହି ପଡ଼ାରେ ବଙ୍ଗାଳୀ କାୟସ୍ଥ ବହୁ କାଳରୁ ବାସ କରୁଥିଲେ ।

ଏମିତ ଗୋଟିଏ ପରିବାରରେ ୧୮୩୮ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ଗୌରୀଶଙ୍କର ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ସଦାଶିବ ପ୍ରସାଦ ରାୟ । ଏହାଙ୍କର ଜାତିଗତ ସାଙ୍ଗିଆ ଥିଲା ବସୁ ଅର୍ଥାତ୍ ସଦାଶିବ ବସୁ କିନ୍ତୁ ରାଜଦତ୍ତ ଉପାଧି ରାୟରେ ଏହି ବଂଶ ଆପଣାକୁ ପରିଚିତ କରାଇଥିଲେ ।

ସଦାଶିବଙ୍କର ଚାରିଗୋଟି ପୁତ୍ର ମଧ୍ୟରୁ ଗୌରୀଶଙ୍କର ସବା ବଡ଼ ଏବଂ ରାମଶଙ୍କର ସବା ସାନ ପୁଅ ଥିଲେ । ମଝିଆ ଦୁଇ ଭାଇ ମଧ୍ୟରୁ ବଡ଼ ଥିଲେ ହରଶଙ୍କର ଏବଂ ତାଙ୍କ ତଳକୁ ଥିଲେ ଗଙ୍ଗାଶଙ୍କର । ଗଙ୍ଗାଶଙ୍କର ଅବିବାହିତ ଅବସ୍ଥାରେ ମରିଯାଇଥିଲେ । ହରଶଙ୍କରଙ୍କର ଦୁଇ ପୁତ୍ର ବର୍ତ୍ତମାନ ।

## ଓଡ଼ିଶାର ପୂର୍ବ ଅବସ୍ଥା

ଗୌରୀଶଙ୍କର ଜନ୍ମ ହେବାର ୮୯ ବର୍ଷ ପୂର୍ବରୁ ଓଡ଼ିଶା ଶାସନରେ ବହୁତ ପରିବର୍ତ୍ତନ ଘଟି ଯାଇଥିଲା । ଇଂରେଜମାନେ ଓଡ଼ିଶା ଦଖଲ କଲା ପରେ ତାହାକୁ ଗୋଟିଏ ଜିଲା କରି ପୁରୀଠାରେ ଶାସନ କେନ୍ଦ୍ର ସ୍ଥାପନ କରିଥିଲେ ଯେହେତୁ ସେଠାରୁ କଲିକତା ଓ ମାନ୍ଦ୍ରାଜ ଅଞ୍ଚଳକୁ ଜାହାଜ ଯାଇ ପାରୁଥିଲା । ଶେଷକୁ ନାନା ଅସୁବିଧା ହେବାରୁ ୧୮୧୬ ଖ୍ରୀଷ୍ଟାବ୍ଦରେ କଟକକୁ ଶାସନ କେନ୍ଦ୍ର କରାଗଲା ଏବଂ ଓଡ଼ିଶାର କଲେକ୍ଟର ଏଠାରେ ରହିଲେ ।

ଏହାର ଦୁଇ ବର୍ଷ ପରେ ୧୮୧୮ରେ ପାଇକମାନେ ଇଂରେଜଙ୍କ ସଙ୍ଗେ ଲଢ଼େଇ ଆରମ୍ଭ କରିଦେଲେ । ଏପରି ଅବସ୍ଥା ସମ୍ଭାଳିବାକୁ ଜଣେ ପ୍ରବୀଣ ଅଫିସର ଲୋଡ଼ା ପଡ଼ିଲା । ସେହି ଗୋଟି କମିଶନର ସାହେବଙ୍କ ଅଧୀନରେ ଗଡ଼ଜାତମାନ ମଧ୍ୟ ରଖାଯାଇଥିଲା । ମାତ୍ର ଏତେବଡ଼ ଇଲାକାଟା ଗୋଟିଏ ଜିଲା ହୋଇ ଶାସିତ ହେବାରେ

ବହୁତ ବାଧା ଦେଖାଗଲା । ଏହା ଫଳରେ ୧୮୨୯ ଖ୍ରୀଷ୍ଟାବ୍ଦରେ ପୁରୀ, କଟକ, ବାଲେଶ୍ୱର ଏପରି ତିନୋଟି ଜିଲ୍ଲାରେ ଓଡ଼ିଶା ବିଭକ୍ତ ହେଲା ଏବଂ ୩ ଜଣ କଲେକ୍ଟର ଏହାର ଦାୟିତ୍ୱ ତୁଲାଇବା ପାଇଁ ରହୁଥିଲେ । ୩ ଜଣ ଯାକ କଟକ କମିଶନରଙ୍କ ଅଧୀନରେ କାମ କଲେ । ପ୍ରଥମେ ଯାଜପୁର ବାଲେଶ୍ୱର ସଙ୍ଗେ ମିଶିଥିଲା ଏବଂ ବାଲେଶ୍ୱରର ଉତ୍ତର ଅଂଶ ମେଦିନୀପୁର ଜିଲା ଅନ୍ତର୍ଗତ ଥିଲା ।

୧୮୨୯ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଶାସନ ଯନ୍ତ୍ରରେ ଏ ଯେଉଁ ପରିବର୍ତ୍ତନ ଘଟିଲା ସେଥିରେ କଟକଠାରେ ଦେବାନୀ ଓ ଫୌଜଦାରୀ ଅଦାଲତମାନ ସ୍ଥାପିତ ହେଲା । ସେହି କଚେରୀମାନଙ୍କରେ କାମ କରିବା ପାଇଁ ଏଠାକାର ଅନେକେ ଜଣ ଲୋକଙ୍କୁ ସାନ ସାନ କାମରେ ରଖାଯାଇଥିଲା । ଗୌରୀଶଙ୍କରଙ୍କ ପିତା ସଦାଶିବପ୍ରସାଦ ରାୟ ଏହିପରି କଟକ ଦେବାନୀ ଅଦାଲତରେ ଗୋଟିଏ ମୋହରର କାମ ପାଇ କଟକ ଆସିଥିଲେ ।

## ଶୈଶବ

ଗୌରୀଶଙ୍କର ପ୍ରଥମେ ଗାଁ ଅବଧାନ ପାଖରୁ ବର୍ଣ୍ଣ ପରିଚୟ ଓ ଅନ୍ୟ ଗୁଡ଼ାଏ ଅଙ୍କ ଶିଖିଥିଲେ । ସେ ଯୁଗରେ ଆଧୁନିକ ଧରଣର ପାଠଶାଳା ନଥିଲା । ଯେଉଁମାନଙ୍କର ଅବସ୍ଥା ଭଲ ଥିଲା ସେମାନେ ଘରେ ଅବଧାନ ରଖି ପାଠ ପଢ଼ାଉଥିଲେ, ତେବେ ଜାଗା ଜାଗା ମକ୍ତବ ବା ମୁସଲମାନ ଚାଟଶାଳୀ ଥିଲା । ଗୌରୀଶଙ୍କର କିଛି କାଳ ଗ୍ରାମର ମକ୍ତବରେ ମଧ୍ୟ ପାଠ ପଢ଼ିଥିଲେ ।

## କଟକ ଆଗମନ

ଗୌରୀଶଙ୍କରଙ୍କୁ ଯେତେବେଳେ ୧୦ ବର୍ଷ ବୟସ ସେତେବେଳେ ଅର୍ଥାତ୍ ୧୮୪୮ ଖ୍ରୀଷ୍ଟାବ୍ଦରେ ପିତା ତାଙ୍କୁ କଟକରେ ପଢ଼ାଇବା ପାଇଁ ସାଙ୍ଗରେ ନେଇ ଆସିଲେ ।

କଟକ ସହର ଅବସ୍ଥା ସେତେବେଳେ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ବଜାର ଓ ସାହି ଯାହା ଥିଲା ତାହା ବଡ଼ାନାସିଠାରୁ ଗୁନ୍ଦନୀଚୌକ ମଧ୍ୟରେ ଏବଂ କିଛି ଅଂଶ ଦେଖି ବଜାର ନଈକୂଳ ଅଟେ । ବାକୀ ସବୁ ସ୍ଥାନ ପଡ଼ିଆ ଗଡ଼ିଆ ଓ ବଣ ବୁଦାରେ ପୂର୍ଣ୍ଣ ଥିଲା ।

ସେତେବେଳେ ମହାନଦୀ କାଠଯୋଡ଼ି ପ୍ରଭୃତିରେ ଅନିକଟ ନଥିବାରୁ କାଠଯୋଡ଼ୀରେ ସବୁଦିନ ଘୋର ପାଣି ସୁଅ ଚାଲିଥିଲା ଏବଂ ଡଙ୍ଗାରେ ସବୁଅଡ଼ୁ ଜଳମୟ ପଚ ଅଧ ନଦୀ କୂଳରେ ଜମା ହେଉଥିଲା । ଏଥିପାଇଁ ବଡ଼ାନାସିଠାରୁ ଗୁନ୍ଦନୀଚୌକ ଏବଂ ଦେବୀଗଡ଼ାଯାଏ ଲୋକବସତି ଥିଲା । କଟକରେ ୮।୧୦ଟା କୋଠା ଘର ଛଡ଼ା ସବୁ ଚାଳ ଘର ଥିବାରୁ ପ୍ରତି ବର୍ଷ ଖରାଦିନେ ଭୀଷଣ ଘରପୋଡ଼ି ହେଉଥାଏ । ଏହିପରି ଭାବରେ ନିଆଁ ଲାଗି ଏକ ହଜାର ଘର ପୋଡ଼ିଯିବା ଫଳରେ ଯେଉଁ ଜାଗାଟି ଖାଲି ପଡ଼ିଥିଲା ଏବେ ତାକୁ ସନ୍‌ଯାଇନ୍ ପଡ଼ିଆ କହୁଛନ୍ତି ।

ଗୌରୀଶଙ୍କର ଯେତେବେଳେ କଟକ ଆସିଲେ ସେତେବେଳେ କଟକରେ ଗୋଟିଏ ନିମ୍ନ ଶ୍ରେଣୀର ଇଂରେଜୀ ବିଦ୍ୟାଳୟ ଥିଲା । ଯେଉଁଠାରେ ଜୁନିୟରସିପ୍ ପଢ଼ାଯାଉଥିଲା । ଏବେପରି ହାଇସ୍କୁଲ କିମ୍ବା ଏଣ୍ଟ୍ରାନ୍ସ ପାଠ ପ୍ରଚଳିତ ହୋଇ ନଥାଏ । ଏମିତି କି କଲିକତା ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବାକୁ ୧୦ ବର୍ଷ ବାକୀ ଥାଏ । ଏହା ଉପରକୁ ଯେଉଁମାନେ ବେଶୀ ପଢ଼ିବାକୁ ଇଚ୍ଛା କରୁଥିଲେ ସେମାନଙ୍କୁ ହୁଗୁଳୀ କିମ୍ବା କଲିକତା ଯାଇ ସିନିୟରସିପ୍ ପଢ଼ିବାକୁ ହେଉଥିଲା । ମାସ ମାସକର ଦୁର୍ଗମ ବଣ ଜଙ୍ଗଲ ଘୋର ଖଣ୍ଡ ନଦୀ ନାଳ ପୂର୍ଣ୍ଣ ଚଲା ପଥରେ କେଉଁ ପିଲା ବା ଏପରି ସାହସ କରି ପାରିବ ବା କେଉଁ ବାପମା ପୁଅକୁ ଏପରି ମୃତ୍ୟୁ ବିପଦ ମଧ୍ୟକୁ ଠେଲିବେ ?

ଗୌରୀଶଙ୍କର ଖୁବ୍ ମନଯୋଗୀ ଛାତ୍ର ଥିଲେ । ସେ ଲାଗିପଡ଼ି ନିର୍ଦ୍ଦିଷ୍ଟ ବୟସମାନ ପଢ଼ି ଅଠ ବର୍ଷରେ ଜୁନିଅର ସ୍କଲରସିପ୍ ପାଶ୍ କରି ମାସିକ ୮ ଟଙ୍କା ବୃତ୍ତି ପାଇଥିଲେ । ସେ ଜୁନିଅର ସିପ୍ ପାଶ୍ କରି ଯେଉଁ ସାର୍ଟିଫିକେଟ୍ ପାଇଥିଲେ ତାହା ନିମ୍ନରେ ଦିଆଗଲା ।

କଟକ ସ୍କୁଲ

ଗୌରୀଶଙ୍କର ଘୋଷ

୧୮୫୫।୫୬

ଜୁନିଅର ସ୍କଲରସିପ୍ ମାସକୁ ୮ଙ୍କା

ଡବ୍ଲ୍ୟୁ ଟମ୍ସନ୍ ଇୟଂ

ଶିକ୍ଷା ବିଭାଗ ଡିରେକ୍ଟର ।

ଉକ୍ତ ସରକାରୀ ବୃତ୍ତି ପାଇବାରୁ ଗୌରୀଶଙ୍କର ଅଧିକ ପଢ଼ିବାକୁ ଅଗ୍ରହୀ ହୋଇ ଉଠିଲେ । ପଥକଷ୍ଟ ବା ବିପଦ ତାଙ୍କୁ ଦବାଇ ପାରିଲା ନାହିଁ । ଶେଷକୁ ତାଙ୍କ ପିତା ବାଧ୍ୟ ହୋଇ ଅନୁମତି ଦେଲେ । ୧୮୫୬ ଖ୍ରୀଷ୍ଟାବ୍ଦ ଜୁନ ମାସରେ ସେ ହୁଗୁଳି ଯିବା ପାଇଁ ଘରୁ ବାହାରିଲେ । ଏକେ ବର୍ଷା କାଳ, ରାସ୍ତା ଏକପ୍ରକାର ଦୁର୍ଗମ । ବଳଦଗାଡ଼ି ଛଡ଼ା ଅନ୍ୟ କୌଣସି ଯାନବାହନ ସେତେବେଳେ ନଥିଲା । ବଳଦ ଗାଡ଼ିରେ ଗଲେ ସେତେବେଳେ ବାଲେଶ୍ବରରେ ପହଞ୍ଚିବାକୁ ୧୨ ଦିନ ଲାଗୁଥିଲା । ଗାଡ଼ିର ଭଡ଼ା ମଧ୍ୟ ବହୁତ ବେଶୀ ଥିଲା । ଏତେ ଟଙ୍କା ତାଙ୍କ ପିତା ଦେଇ ପାରିବେ ନାହିଁ କହିଲାରୁ ଗୌରୀଶଙ୍କର ଚାଲିଚାଲି ବାଲେଶ୍ବର ଗଲେ ଏବଂ ୨୨ ଦିନରେ ହୁଗୁଳୀରେ ପହଞ୍ଚି କଲେଜରେ ନାମ ଲେଖାଇଲେ । ସିନିଅର ସ୍କଲରସିପ୍ ପରୀକ୍ଷାରେ ବଙ୍ଗଳା ଗ୍ରନ୍ଥପାଠ ଓ ବ୍ୟାକରଣ ଛଡ଼ା ଅଉ ୬ଟଗୋଟି ବିଷୟ ଇଂରେଜିରେ ପଢ଼ି ପରୀକ୍ଷା ଦେବାକୁ ହେଉଥିଲା । ସମୁଦାୟ ପାଠ ଦୁଇ ବର୍ଷରେ ଶେଷ କରିବାକୁ ପଡ଼ୁଥିଲା । ଅନ୍ୟ ଇଂରେଜି ବହି

ମଧ୍ୟଯୁଗର ସାଧାରଣ ଇତିହାସ, ଗୋଲ୍ଡସ୍ମିଥ୍ ଙ୍କ ରଚନା, ମରେଙ୍କ ଗ୍ରାମାର୍, ଷ୍ଟିଓ୍ୱାର୍ଟ ଭୂଗୋଳ, ଯୁକ୍ତ ଅଙ୍କ ଓ ବୀଜଗଣିତ, ଜ୍ୟାମିତି ୨ଭାଗ ଏବଂ ପ୍ରାଣୀବିଜ୍ଞାନ ଅନ୍ତର୍ଭୁକ୍ତ ଥିଲା।

ପ୍ରଥମ ଶ୍ରେଣୀରେ ବର୍ଷେ ପଢ଼ି ସେ ଇଂରେଜୀରେ ଉତ୍ତମ ଜ୍ଞାନଲାଭ କରି ମେଦିନୀପୁର କଲେଜରୁ ପ୍ରଶଂସାପତ୍ର ପାଇଥିଲେ। ତତ୍ପରେ ଦେହ ସ୍ୱାସ୍ଥ୍ୟ ଭଲ ନଥିବାରୁ ଶେଷ ଶ୍ରେଣୀରେ ପଢ଼ିବାବେଳେ ଅସୁସ୍ଥତା କାରଣରୁ ଶେଷ ପରୀକ୍ଷା ଦେଇ ପାରିଲେ ନାହିଁ। ଶରୀର ଦୁର୍ବଳ ଥିବାରୁ ସେମାନଙ୍କ ଆଦେଶ ମତେ ୧୮୫୮ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସରେ ସେ କଲିକତା ବାଟେ ଓଡ଼ିଶାକୁ ଫେରିଆସିଲେ।

ସେ ବର୍ଷ ଇଷ୍ଟଇଣ୍ଡିଆ କମ୍ପାନୀଠାରୁ ଭାରତ ଶାସନଭାର ସ୍ୱୟଂ ମହାରାଣୀ ଭିକ୍ଟୋରିଆ ଗ୍ରହଣ କରିବାରୁ କଲିକତାରେ ଏକ ଉତ୍ସବ ପାଳିତ ହୋଇଥିଲା। ଗୌରୀଶଙ୍କର ଏହି ଦୃଶ୍ୟ ଦେଖିବାର ସୁଯୋଗ ପାଇଥିଲେ।

## ଶିକ୍ଷକତା

ସେତେବେଳେ କଲିକତାରୁ ବାଲେଶ୍ୱରକୁ ଜାହାଜ ଯା’ଆସ କରୁଥିଲା ବୋଲି ଗୌରୀଶଙ୍କର ସେହି ବାଟରେ ଆସି ବାଲେଶ୍ୱରରେ ପହଞ୍ଚିଲେ। ସେତେବେଳେ ବାଲେଶ୍ୱର ସ୍କୁଲରେ ଜଣେ ଶିକ୍ଷକ ପଦ ଖାଲି ଥିଲା। ଗୌରୀଶଙ୍କର ଅର୍ଥାଭାବରୁ ଉକ୍ତ ସ୍କୁଲରେ ମାସିକ ୫୦ଟଙ୍କା ଦରମାରେ ତୃତୀୟ ମାଷ୍ଟର ପଦ ଗ୍ରହଣ କରିଥିଲେ। ଓଡ଼ିଶାର ତିନି ଜଣ ବରିଷ୍ଠ ବ୍ୟକ୍ତି ପ୍ରାୟ ଏହି ସ୍କୁଲରେ ମାଷ୍ଟର ଭାବେ ନିଜର ସଫଳ କର୍ମ-ଜୀବନ ଆରମ୍ଭ କରିବା ବଡ଼ ବିସ୍ମୟ। ମଧୁସୂଦନ ଦାସ, କବିବର ରାଧାନାଥ ଏବଂ ଗୌରୀଶଙ୍କର, ତିନିହେଁ ଓଡ଼ିଶାର ମୁଖଉଜ୍ଜ୍ୱଳ କରିଛନ୍ତି ଏବଂ ତିନିହେଁ ଜଣକ ପାଠପଢ଼ା ପରେ ଏହିଠାରେ

ମାଗ୍ନର କରୁଥିଲେ । ଗୌରୀଶଙ୍କର ସେତେବେଳେ ମଗ୍ନର କରୁଥିଲେ ସେତେବେଳେ ଭକ୍ତବର ମଧୁସୂଦନ ଓ ମହାତ୍ମା ବୈକୁଣ୍ଠନାଥ ପ୍ରଭୃତି ସେଠାରେ ଛାତ୍ର ଥିଲେ ଏବଂ ପରେ ପୁଣି ଗୌରୀଶଙ୍କର ଦେଶ କାମରେ ସହକର୍ମୀ ହୋଇ ପାରିଥିଲେ ।

## ଅମଲଗିରି

୧୮୫୯ ଖ୍ରୀଷ୍ଟାବ୍ଦରେ କଟକ କମିଶନର ସାହେବଙ୍କ ଅଫିସରେ ଜଣେ ଅମଲା ଛୁଟି ନେବାରୁ ତାଙ୍କ କାମ ଚଳାଇବା ପାଇଁ ଜଣେ ଇଂରେଜୀ ଜାଣିବା ଲୋକ ଦରକାର ପଡ଼ିଲା । ଗୌରୀଶଙ୍କର ମାସିକ ୫୦ଟଙ୍କା ଦରମାରେ ଏହି କାମରେ ଅସ୍ଥାୟୀ ଯୋଗ ଦେଇଥିଲେ । ଏହି କାମ ଶେଷ ହେଲାବେଳକୁ କଲେକ୍ଟର ସାହେବଙ୍କ ଅଧୀନରେ ଅବକାରୀ କର୍ମଚାରୀ କାମ ଖାଲି ହେଲା । ଏହି କାମ ପାଇଁ ଅନ୍ୟ ୨।୩ ଜଣ ପ୍ରାର୍ଥୀ ଥିଲେ ମଧ୍ୟ କମିଶନର କର୍ଣ୍ଣେଲ ସାହେବ ଗୌରୀଶଙ୍କରଙ୍କ କାମରେ ସନ୍ତୁଷ୍ଟ ହୋଇଥିବାରୁ ଗୌରୀଶଙ୍କରଙ୍କୁ ଉକ୍ତ ସ୍ଥାୟୀ କାମଟି ଦେଲେ । ଏହି ଅବକାରୀ କର୍ମଚାରୀ କାମ ଗୌରୀଶଙ୍କର ଖୁବ୍ ଦକ୍ଷତାର ସହିତ ଚଳାଉଥିଲେ ଏବଂ ଏହା ସାଙ୍ଗକୁ ଟ୍ରେଜେରୀ କର୍ମଚାରୀ, ସ୍ଟାମ୍ପ କର୍ମଚାରୀ କାମ ମଧ୍ୟ କରୁଥିଲେ । ଏହି କାମ କରୁଥିବା ବେଳେ ମଧ୍ୟ ସେ ଓଡ଼ିଶାର ଓଡ଼ିଆ ଭାଷା ଆଦି ରକ୍ଷା କରିବା ପାଇଁ ସଭାସମିତି ଆୟୋଜନ ଏବଂ ଉତ୍କଳ ଦୀପିକା ସମ୍ପାଦନ କରୁଥିଲେ । ସରକାରୀ ଗୃହକର୍ମ ହେଲେ ମଧ୍ୟ ସରକାରଙ୍କୁ ପ୍ରକାଶ୍ୟ ଭାବରେ ସମାଲୋଚନା କରୁଥିଲେ । ଏଥିନିମିତ୍ତ ସେ ବେଳେ ବେଳେ ହାକିମଙ୍କ ବକ୍ରଦୃଷ୍ଟିରେ ପଡ଼ିଲେହେଁ ମିଛ କହୁ ନାହାନ୍ତି କିମ୍ବା ନିଜ ବ୍ରତରୁ ଟଳି ନାହାନ୍ତି ।

ଗୌରୀଶଙ୍କର ଖୁବ ସୁଖ୍ୟାତି ସହିତ ଅବକାରୀ କର୍ମଚାରୀ କାମ କଲେ ପରେ ୧୮୭୨ ଖ୍ରୀଷ୍ଟାବ୍ଦରେ କଟକ ଅଦାଲତରେ ଜଣେ

ଟ୍ରାନ୍‌ସଲେଟର କାମ ମିଳିଲା । ଏ କାମର ବେତନ ଥିଲା ମାସକୁ ୫୧୦୦ଙ୍କା । ତାଙ୍କୁ ଅଫିସ ଓ ଏ କାମକୁ ପ୍ରମୋସନ୍ ଦିଆଗଲା ଏବଂ ଏହି କାମରେ ସେ ୧୮୯୨ ଖ୍ରୀଷ୍ଟାବ୍ଦ ଯାଏ କାମ କରି ପେନ୍‌ସନ୍ ଗ୍ରହଣ କରିଥିଲେ । ସର୍କାରୀ ଚାକିରି କଲାବେଳେ ସେ ନିଜର ବଳକା ସମୟକୁ ଦେଶ କାମରେ ଖଟାଉଥିଲେ; ଏଣିକି ସବୁବେଳେ ଦେଶ କାମରେ ମନ ପ୍ରାଣ ଢାଳି ଦେଉଥିଲେ ।

ଗୌରୀଶଙ୍କରଙ୍କ କିରାଣୀ ଚାକିରିବେଳେ ଗୋଟିଏ ବିଶେଷ ଗୁଣ ସମସ୍ତେ ଦେଖୁଥିଲେ । ସେ ଅନ୍ୟ କିରାଣୀଙ୍କ ପରି ହାକିମଙ୍କୁ ଖୁସୀ ରଖିବା ପାଇଁ ସବୁ କଥାରେ ହାଁଜୀ ହାଁଜୀ କରୁ ନଥିଲେ । ନିଜ ବୁଦ୍ଧି ବିବେକ ଦେଇ ଯାହା ଭଲ ଓ ଉଚିତ ମନେ କରୁଥିଲେ ତାହା କରିବାକୁ ସର୍ବଦା ଦୃଢତା ଦେଖାଉଥିଲେ । ଏଥି ନିମିତ୍ତ ହାକିମଙ୍କ ସଙ୍ଗରେ ମତାନ୍ତର ଘଟିଲେ ମଧ୍ୟ ସେ ଧୈର୍ଯ୍ୟ ଧରି ନିଜର କର୍ତ୍ତବ୍ୟ କରୁଥିଲେ ।

ଗୌରୀଶଙ୍କର ଚାକିରି ଆରମ୍ଭ କଲାବେଳେ ଓଡ଼ିଶାରେ ସମ୍ବାଦ ପତ୍ର କିମ୍ବା ଜନମତ ପ୍ରକାଶ କରିବା ପାଇଁ କୌଣସି ସଭା ସମିତି ନଥିଲା । ଓଡ଼ିଆମାନେ ସବୁ ବିଷୟରେ ଅବନତ ରହିଥିବାରୁ ତାଙ୍କର ହାହାକାର କେହି ଶୁଣୁ ନଥିଲେ । ଯେଉଁ ବଙ୍ଗାଳୀ କିରାଣୀ, ଦୋଭାଷି ଆଦି ହାକିମ ଓଡ଼ିଶାରେ କାମ କରୁଥିଲେ ସେମାନେ ଓଡ଼ିଆଙ୍କୁ ତୁଚ୍ଛ ତାଚ୍ଛଲ୍ୟ କରୁଥିଲେ । ଓଡ଼ିଆ ପଢ଼ିବା ପାଇଁ କୌଣସି ପାଠ୍ୟ ପୁସ୍ତକ ମଧ୍ୟ ନଥିଲା । ବଙ୍ଗାଳୀ ପଣ୍ଡିତମାନେ ଅପୂର୍ବ ଧରଣରେ ଓଡ଼ିଆ ପାଠ ପଢ଼ାଉଥିଲେ ।

ଯେଉଁ ଖଣ୍ଡିଏ ଓଡ଼ିଆ ସମ୍ବାଦପତ୍ର ଥିଲା ତାହା ପାଦ୍ରୀ ସାହେବମାନେ ଶ୍ରୀରାମପୁରଠାରୁ ପ୍ରକାଶ କରୁଥିଲେ ଏବଂ ତାହା

ମାସିକ ଥିଲା । ଓଡ଼ିଆରେ ଦୈନନ୍ଦିନ କାମରେ ତାଙ୍କି ଖଣ୍ଡେ ସୁଦ୍ଧା ମିଳୁ ନଥିବାରୁ ଏହି ପାଦ୍ରୀମାନେ ତାଙ୍କର ସେହି ପ୍ରବୋଧଚନ୍ଦ୍ରିକା ଓ ସମାଚାର ଦର୍ପଣରେ ମାଘ ମାସକୁ ଓଡ଼ିଆ ପାଞ୍ଜି ଦେଉଥିଲେ । ଏହା ୧୮୫୫-୧୮୫୬ ରେ ପ୍ରକାଶିତ ହୋଇ ଚଳୁଥିଲା । ଓଡ଼ିଆ ଭାଷାରେ କାବ୍ୟ, ପୁରାଣ, ଭାଗବତ, ମହାଭାରତ ପ୍ରଭୃତି ସୁନ୍ଦର ସୁନ୍ଦର ପୋଥିମାନ ଥିଲେ ମଧ୍ୟ ତାହା ତାଳପତ୍ରରେ ଲେଖା ହୋଇଥିଲା ଏବଂ ବଡ଼ ବଡ଼ ଧନୀଲୋକ ମାନେ ଛଡ଼ା ଅନ୍ୟ କେହି ପାଇ ପାରୁ ନଥିଲେ ।

ପାଦ୍ରୀ ସାହେବମାନେ ମିଶନ ପ୍ରେସ ସ୍ଥାପନ କରିଥିଲେ ମଧ୍ୟ ସେଥିରେ ନିଜର ଧର୍ମ ପୁସ୍ତକ ଛପାଇବା ଛଡ଼ା ଆଉ କିଛି କରୁ ନଥିଲେ । ଗୌରୀଶଙ୍କର ଓଡ଼ିଶାରେ ଜନମତ ସଙ୍ଗଠିତ କରିବା ପାଇଁ ଏକ ସଭା ଏବଂ ଜନମତ ପ୍ରକାଶ ପାଇଁ ଏକ ସମ୍ବାଦପତ୍ରର ଅଭାବ ତୀବ୍ରଭାବରେ ଅନୁଭବ କଲେ । ଏଣୁ କରି ସ୍ବୀକାର କରୁଥିଲା ବେଳେ ୧୮୬୪ ସାଲରୁ ସେ ଗୋଟିଏ ଯୌଥ କମ୍ପାନୀ ଗଢ଼ି କଟକରେ ଛାପାଖାନା ସ୍ଥାପନ କରିବାର ଚେଷ୍ଟା କରିଥିଲେ । ୧୮୬୪ ଓ ୧୮୬୫ ଖ୍ରୀଷ୍ଟାବ୍ଦରେ ଦେଶରେ ଦୁଇ ବର୍ଷ ବର୍ଷା ନ ହୋଇ ଫସଲ ହାନୀ ଘଟିଲା । ଲୋକେ ଖାଇବାକୁ ପାଇଲେ ନାହିଁ । ସେତିକିବେଳେ ସମ୍ବାଦପତ୍ର ପ୍ରକାଶ ସବୁଠାରୁ ଗୁରୁତର ବିବେଚନା କରି ସେ ଅଧିକ ଉତ୍ସାହରେ ମାତି ଉଠିଲେ । ସୁଖର କଥା ଏତିକିବେଳେ ବାବୁ ହରେକୃଷ୍ଣ ଦାସ, ବାବୁ ଜଗନ୍ନାଥ ସର୍କାର, ଶ୍ରୀ ବନମାଳି ସିଂହ, ଶ୍ରୀ ଗୋକୁଳଚନ୍ଦ୍ର ବୋଷ, ବାବୁ ଜଗମୋହନ ବସୁ ପ୍ରମୁଖ କେତେକଣ ଲୋକ ତାଙ୍କୁ ସମର୍ଥନ କଲେ ଏବଂ ଏହିମାନଙ୍କୁ ଡିରେକ୍ଟର ଭାବେ ସେ କଟକ ପ୍ରିଣ୍ଟିଂ କମ୍ପାନୀ ପ୍ରତିଷ୍ଠା କରିଥିଲେ ।

ପ୍ରକୃତରେ ପ୍ରିଣ୍ଟିଂ କମ୍ପାନୀ ସ୍ଥାପନ ତାଙ୍କ ଜୀବନରେ ପ୍ରଧାନ ଓ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ।

୧୮୬୫ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୬ ତାରିଖ ଦିନ କୋମ୍ପାନୀ ଡାଇରେକ୍ଟରମାନଙ୍କର ପ୍ରଥମ ସଭା ହୋଇଥିଲା । ବହୁ କଷ୍ଟରେ ସର୍ବମୋଟ ୨୫ ଟଙ୍କା ମୂଲ୍ୟର ୨୭୭ ଗୋଟି ଅଂଶ ବିକ୍ରୟ କରି ପ୍ରାପ୍ତ ୪ ହଜାର ଟଙ୍କାରେ ସେ ପ୍ରିଣ୍ଟିଂ କମ୍ପାନୀର ଛାପାଖାନା ଜଗମୋହନ ବାବୁଙ୍କ ଘରେ ଆରମ୍ଭ କରିଥିଲେ ଏବଂ ଅଗଷ୍ଟ ୪ ତାରିଖ ୧୮୬୬ ଖ୍ରୀଷ୍ଟାବ୍ଦରେ ତାଙ୍କ ସମ୍ପାଦକତ୍ୱରେ ଉତ୍କଳ ଦୀପିକା ପ୍ରଥମ ଆତ୍ମପ୍ରକାଶ କରିଥିଲା ।

ସେତେବେଳେ ଓଡ଼ିଆ ଅକ୍ଷର ନ ମିଳିବାରୁ ପଥର ଉପରେ ହାତରେ ଲେଖି ସେହି ପଥରରୁ ଛାପା କାମ ଚାଲିଥିଲା ଏବଂ ବାବୁ ଭଗୀରଥି ସାଠିଆ ଟ୫ଙ୍କା ଦରମାରେ ଏହି ଲେଖନକାର ନିଯୁକ୍ତ ହୋଇଥିଲେ ।

## ଦୁର୍ଭିକ୍ଷ

ଦୀପିକା ଆରମ୍ଭ ହେଲାକୁ ଓଡ଼ିଶାରେ ଦାରୁଣ ଅନ୍ନ କଷ୍ଟ ଉଠିଥିଲା । ପ୍ରତ୍ୟହ ଶତ ଶତ ଲୋକ ଖାଇବାକୁ ନ ପାଇ ମରୁଥାନ୍ତି । କେତେ ଖାଦ୍ୟ ଲୋଭରେ ଅଜାତରେ ମିଶୁଥାନ୍ତି କିମ୍ବା ଖ୍ରୀଷ୍ଟାନ ହେଉଥାନ୍ତି । ଏହି ଦୁର୍ଭିକ୍ଷକୁ ଓଡ଼ିଶାରେ ନଅଙ୍କ ବୋଲି କହନ୍ତି ଏବଂ ଏଥିଯୋଗୁଁ ଦେଶର ପ୍ରାୟ ତୃତିଭାଗରୁ ଏକଭାଗ ଲୋକ ଖାଇବାକୁ ନପାଇ ମରିଯାଇଥିଲେ ।

ଗୌରୀଶଙ୍କର ଏହି ଦୁର୍ଭିକ୍ଷ ସମ୍ବନ୍ଧରେ ମୂଳରୁ ତଥ୍ୟପୂର୍ଣ୍ଣ ଲେଖାମାନ ପ୍ରକାଶ କରିବାରୁ ବଙ୍ଗଳା ଲାଟଙ୍କ ଚେତା ପଶିଲା ଏବଂ ଜାଗା ଜାଗା ଅନ୍ନଛତ୍ର ଫିଟିଲା । ଦୁର୍ଭିକ୍ଷ ତଦନ୍ତ କମିଟି ମଧ୍ୟ ବସିଥିଲା ।

ଦୁଇ ବର୍ଷ ଏପରି ଭାବରେ ପଥର ଉପରେ ଲେଖି ଛାପାକାମ ଚାଲ ପରେ ଓଡ଼ିଆ ଅକ୍ଷର ଅଧ ପ୍ରସ୍ତୁତ ହୋଇ କାମ ହେଲା ଏବଂ ୧୮୬୦ ଖ୍ରୀଷ୍ଟାବ୍ଦରେ ଜେଲଖାନା ସମ୍ମୁଖ କୋଠାଘର କମ୍ପାନୀ ତରଫରୁ ହୋଇ ସେଠାକୁ ପ୍ରେସ ଉଠି ଆସିଲା ।

ଦୁର୍ଭିକ୍ଷ ଛଡ଼ା ଏତେବେଳର ଆଉ ଗୋଟିଏ ବଡ଼ କାମ ହେଉଛି ଓଡ଼ିଆ ଭାଷା ରକ୍ଷା କରିବା । ବଙ୍ଗାଳି ହାକିମ ଓ ବାବୁମାନେ କହୁଥିଲେ ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ ଅତଏବ ଏହାକୁ ଉଠାଇ ଦେଇ ବଙ୍ଗଳା ଭାଷା ସ୍କୁଲ କଚେରିରେ ଚଳାଯାଉ । ସରକାର ଏହା କାର୍ଯ୍ୟରେ ପରିଣତ କରିବାକୁ ଯାଉଥିଲେ । ଓଡ଼ିଶାର ସୌଭାଗ୍ୟକୁ ବାଲେଶ୍ୱରର ବୈକୁଣ୍ଠନାଥ ଦେ, ରାଧାନାଥ ରାୟ ଓ ଫକୀରମୋହନ, କଟକର ଗୌରୀଶଙ୍କର, ବିଚିତ୍ରାନନ୍ଦ ଦାସ ଓ ଜଗମୋହନ ରାୟ ପ୍ରଭୃତି ଏହା ବିରୁଦ୍ଧରେ ତୀବ୍ର ଆନ୍ଦୋଳନ କରିଥିଲେ । ଗୌରୀଶଙ୍କର ଉତ୍କଳ ଦୀପିକା ସ୍ତମ୍ଭରେ ଏହା ବିରୁଦ୍ଧରେ ଅତି ଯୁକ୍ତିପୂର୍ଣ୍ଣ ଲେଖାମାନ ଛପାଇ ଓଡ଼ିଆ ଭାଷାର ଗୁରୁତ୍ୱ ପ୍ରମାଣ କରିଥିଲେ । ଏହାଙ୍କୁ ପୁଣି ସମର୍ଥନ କଲେ ବାଲେଶ୍ୱରର କଲେକ୍ଟର ବିମ୍ସ୍ ସାହେବ ଯେ କି ୧୪ଟି ଭାଷା ଭଲ ଭାବେ ଜାଣିଥିଲେ ଏବଂ କମିଶନର ରେଭେନ୍ସା ସାହେବ । ଗୌରୀଶଙ୍କରଙ୍କଠାରୁ ରେଭେନ୍ସା ସାହେବ ବହୁ ଓଡ଼ିଆ ପ୍ରାଚୀନ କବିଙ୍କର ଲେଖାମାନ ପାଇ ତାହା ଭାରତ ମନ୍ତ୍ରୀଙ୍କ ପାଖକୁ ପଠାଇଥିଲେ । ଶେଷକୁ ଓଡ଼ିଆ ଭାଷା ରହିଗଲା ।

ଗୌରୀଶଙ୍କର ୧୮୭୬ ରେ ଉତ୍କଳ ଆସୋସିଏସନ କରି ନିଜେ ୩୩ ବର୍ଷ କାଳ ତହିଁର ସମ୍ପାଦକ ଥିଲେ ଏବଂ ସଦା ସର୍ବଦା ଆସୋସିଏସନ ପକ୍ଷରୁ ଓଡ଼ିଆଙ୍କ ହାରି ଗୁହାରି ଅଭାବ ଅଭିଯୋଗ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଉଥିଲେ । ସେହି ଆସୋସିଏସନକୁ ସମ୍ମୁଖରେ

ରଖି ସେ ଭଦ୍ରକରେ କଲେଜ ସ୍ଥାପନ ପାଇଁ ପ୍ରବଳ ଉଦ୍ୟମ କରିଥିଲେ ।

ସରକାରୀ କର୍ମଚାରୀ ହୋଇ ମଧ୍ୟ ସେ ସରକାରଙ୍କର ଅନେକ କାର୍ଯ୍ୟ ସମାଲୋଚନା କରିଥିଲେ । ସେ ବୃଥା ଅନର୍ଥ କଥା ଦ୍ୱନ୍ଦରେ ଯୋଗ ନ ଦେଇ ଧୀରଭାବରେ ନିଜ ମତାମତ ଦେଉଥିଲେ । ପୁନଶ୍ଚ ଧରିନିଅନ୍ତୁ ଓଡ଼ିଶାର ନବ ଜାଗରଣ ଏବଂ ସର୍ବବିଧ ଉନ୍ନତି ମୂଳରେ ଗୌରୀଶଙ୍କରଙ୍କ ଉଦ୍ୟମ ପ୍ରଥମ । ପ୍ୟାରୀମୋହନ ଆଚାର୍ଯ୍ୟ କଟକରେ ଏକାଡେମୀ ସ୍ଥାପନ କଲା ପରେ ସେ ତାହାର କାର୍ଯ୍ୟକାରୀ କମିଟିର ମେମ୍ବର ଓ ପରେ ପ୍ରାୟ ୨୦ ବର୍ଷ ସଭାପତି ହୋଇଥିଲେ । ଏହା ଛଡ଼ା ବହୁ ବର୍ଷଯାଏ ସେ କଟକ ଜିଲ୍ଲା ବୋର୍ଡର ସଭ୍ୟ ଥିଲେ ଏବଂ କଟକ ମ୍ୟୁନିସିପାଲିଟିରେ ମଧ୍ୟ କମିଶନର ହୋଇଥିଲେ ।

ଓଡ଼ିଶାରେ ଯେତେବେଳେ କଂଗ୍ରେସ କଥା କେହି ଜାଣି ନ ଥିଲେ ସେତେବେଳେ ସେ ଏକାକୀ ନିଜ ଖର୍ଚ୍ଚରେ ଉତ୍କଳ ଆସୋସିଏସନ ପକ୍ଷରୁ ପ୍ରତିନିଧି ହୋଇ କଂଗ୍ରେସରେ ଯୋଗ ଦେଉଥିଲେ । ୧୯୧୬ ଖ୍ରୀଷ୍ଟାବ୍ଦରେ ଅତି ବୃଦ୍ଧ ବୟସରେ ସେ କଂଗ୍ରେସର ଲକ୍ଷ୍ନୌ ଅଧିବେଶନରେ ଯୋଗଦେବାକୁ ଯାଇଥିଲେ । ଏହାହିଁ ତାଙ୍କର ଶେଷ କଂଗ୍ରେସ ଦର୍ଶନ ।

ଆଜି ଦିନ କଂଗ୍ରେସର ପ୍ରଭାବ ଏତେ; କିନ୍ତୁ ସେହି ଯୁଗରେ ସରକାରୀ କର୍ମଚାରୀ ହୋଇ ନିଜ ଖର୍ଚ୍ଚରେ କଂଗ୍ରେସରେ ଯୋଗଦେବା ଅସାଧାରଣ ଉତ୍ସାହସର ଆବଶ୍ୟକ ଥିଲା ।

## ଅନ୍ୟାନ୍ୟ ଦେଶ କାମ

ସମ୍ବଲପୁର ସହିତ ଅନ୍ୟ କେତେ ଗୋଟି ଗଡ଼ଜାତ ପୂର୍ବେ ଛୋଟନାଗପୁର ସଙ୍ଗେ ମିଶି କରି ଥିଲା । ଗୌରୀଶଙ୍କର ଯେଉଁ ବର୍ଷ

କଟକ ପଢ଼ିବାକୁ ଆସିଥିଲ ତତ୍ପର ବର୍ଷ ଅର୍ଥାତ୍ ୧୮୪୯ ଖ୍ରୀଷ୍ଟାବ୍ଦରେ ସମ୍ବଲପୁର ରଜା ନାରାୟଣ ସିଂହ ଅପୁତ୍ରିକ ହୋଇ ମରିବାରୁ ତାହା ଗଭର୍ଣ୍ଣମେଣ୍ଟ ଖାସ ଦଖଲକୁ ନେଲେ । ୧୮୬୦ ରେ ଅର୍ଥାତ୍ ଯେ ଯେଉଁ ବର୍ଷ କଟକରେ କମିଶନରୀ ହେଲେ ତତ୍ପର ବର୍ଷ ତାହା ଓଡ଼ିଶାରେ ମିଶାଇ ଦିଆଯାଇଥିଲା ଏବଂ ପୁଣି ଦୁଇ ବର୍ଷ ପରେ ମଧ୍ୟପ୍ରଦେଶରେ ସାମିଲ କରାଗଲା । ସୁତରାଂ ସମ୍ବଲପୁର ଓଡ଼ିଶା ସଙ୍ଗେ ମିଶିବା ଉଚିତ ବୋଲି ସେ ତେବେଠାରୁ ମତପୋଷଣ କରିଥିଲେ ।

୧୮୬୬ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ନଅଙ୍କ ପଡ଼ିଥିଲା ବୋଲି ବନ୍ଦୋବସ୍ତ କରିବା ଉଚିତ ନୁହେଁ ବୋଲି ଗୌରୀଶଙ୍କର ବାବୁ ବହୁତ ଲେଖା ଲେଖି କରିଥିଲେ । ଏହା ଫଳରେ ପୂର୍ବ ବନ୍ଦୋବସ୍ତର ମିଆଦ ଆହୁରି ୩୦ ବର୍ଷ ବଢ଼ାଇ ଦିଆଯାଇଥିଲା ।

୧୮୭୮ ଖ୍ରୀଷ୍ଟାବ୍ଦରେ ପୁରୀ ରାଜା ଦିବ୍ୟସିଂହ ଦେବ ଦ୍ୱୀପାନ୍ତର ଦଣ୍ଡ ପାଇବାରୁ ପୁରୀ ମନ୍ଦିର ସରକାର ନିଜ ହାତକୁ ନେଇଥିଲେ । ଏହା ବିରୁଦ୍ଧରେ ଗୌରୀଶଙ୍କର ଉତ୍କଳ ଦୀପିକାରେ ଆନ୍ଦୋଳନ ସୃଷ୍ଟି କରି ମନ୍ଦିରର ଭାର ରାଜ ବଂଶର କୌଣସି ବ୍ୟକ୍ତିକୁ ଦେବାକୁ କହୁଥିଲେ ।

ପୂର୍ବରୁ କୁହାଯାଇଅଛି ଯେ ଇଂରେଜମାନେ ପ୍ରଥମେ ପୁରୀକୁ ଶାସନ କେନ୍ଦ୍ର କରିଥିଲେ । ଏଣୁକରି ସେଠାରେ ୧୮୩୮ରେ ଏକ ଇଂରେଜୀ ଓ ଏକ ସଂସ୍କୃତ ବିଦ୍ୟାଳୟ ବସାଇ ଥିଲେ ।

ପୁରୀଠାରେ ସ୍କୁଲ ବସାଇବାର ୩ ବର୍ଷ ପରେ ୧୮୪୧ ଖ୍ରୀଷ୍ଟାବ୍ଦରେ କଟକରେ ଇଂରେଜୀ ଶିଖିବା ପାଇଁ ଗୋଟିଏ ସ୍କୁଲ ସ୍ଥାପନ କରାଗଲା । ଗୌରୀଶଙ୍କର ଏହି ସ୍କୁଲରୁ ଜୁନିୟର ପାଶ୍ କରିଥିଲେ ।

ସେ ସେତେବେଳେ ହୁଗୁଳୀରୁ ଫେରି ବାଲେଶ୍ବରଠାରେ ଅଲ୍ଡାମ ରହୁ କଟକଙ୍କୁ କମିଶ୍ନୀ ହୋଇ ଆସିଥିଲେ ସେତେବେଳକୁ ସମଗ୍ର ଓଡ଼ିଶାରେ ସର୍ବମୋଟ ୫୮ ଗୋଟି ପ୍ରାଥମିକ ବିଦ୍ୟାଳୟ ତିଷ୍ଠି ସାରିଥିଲା । ୧୮୭୫ ଖ୍ରୀଷ୍ଟାବ୍ଦରେ ଏହିପରି ସ୍କୁଲ ସଂଖ୍ୟା ୫୩୯ ହୋଇଥିଲା ଏବଂ ପରବର୍ତ୍ତୀ ୧୦ ବର୍ଷ ମଧ୍ୟରେ ଏହି ସଂଖ୍ୟା ବଢ଼ି ବଢ଼ି ୪୭୩୬ ହୋଇଥିଲା । ୧୮୬୮ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ ନଅଙ୍କ ଦୁର୍ଭିକ୍ଷର ୨ ବର୍ଷ ପରେ ଓଡ଼ିଶାରେ ସର୍ବ ପ୍ରଥମ ହୋଇ ହାଇ ସ୍କୁଲ ପ୍ରତିଷ୍ଠା କରାଯାଇଥିଲା ଏବଂ ଏଠାର ଛାତ୍ରମାନେ କଲିକତା ବିଶ୍ବବିଦ୍ୟାଳୟ ଏଣ୍ଟ୍ରାନ୍ସ ପରୀକ୍ଷା ଦେଇ ପାରୁଥିଲେ । ଏହି ହାଇ ସ୍କୁଲ ପ୍ରତିଷ୍ଠାପାଇଁ ଗୌରୀଶଙ୍କର ଦୀପିକାରେ ବାରମ୍ବାର ଦାବୀ କରିଥିଲେ ଏବଂ ବିଶ୍ବବିଦ୍ୟାଳୟର ପୁରସ୍କାର ବିତରଣୀ ସଭାର ବିଶଦ ବିବରଣୀ ଦୀପିକାରେ ଛପାଉଥିଲେ ।

ଦୁର୍ଭିକ୍ଷ ସାହାଯ୍ୟ କାମ ରୂପେ ଓଡ଼ିଶାରେ ପ୍ରଥମେ କେନାଲ ଖୋଳା କାମ ଆରମ୍ଭ କରାଯାଇଥିଲା । ପ୍ରଥମେ କେନାଲ କଟକଠାରୁ ଆରମ୍ଭ ହୋଇଥିଲା ଏବଂ ଏଥିନିମିତ୍ତ ୩ ଗୋଟି ନଦୀରେ ୩ ଗୋଟି ଆନିକଟ ହୋଇଥିଲା । ଗୋଟିଏ ବିଲାତି କମ୍ପାନି ଏହି କାମ ସୌଥ କାରବାର ହିସାବରେ କରିଥିଲେ । ଜଳସେଚନ ଛଡ଼ା କେନାଲ ଦ୍ବାରା ନୌକା ପ୍ରଚଳନ କମ୍ପାନୀର ଉଦ୍ଦେଶ୍ୟ ଥିଲା । କମ୍ପାନୀ କିନ୍ତୁ ଲାଭ କରି ନ ପାରିବାରୁ କେନାଲ କାମ ପୂରା କରି ନ ଥିଲେ । ଶେଷକୁ ୧୮୬୮ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣମେଣ୍ଟ କମ୍ପାନୀଠାରୁ କେନାଲ ସବୁ କିଣି ନେଇ କାମ ପୂର୍ଣ୍ଣ କରିଥିଲେ ।

୧୮୬୯ ଖ୍ରୀଷ୍ଟାବ୍ଦରେ ଯାଜପୁର ଓ କେନ୍ଦ୍ରାପଡ଼ା ସହରରେ ପ୍ରଥମେ ମ୍ୟୁନିସିପାଲିଟି ସ୍ଥାପିତ ହୋଇଥିଲା ଏବଂ ୧୮୭୬ ଖ୍ରୀଷ୍ଟାବ୍ଦରେ କଟକରେ ମଧ୍ୟ ମ୍ୟୁନିସିପାଲିଟି ସ୍ଥାପନ କରିଲେ । ମହାରାଣୀ

ଭିକ୍ଟୋରିଆଙ୍କ ଜୁବୁଲି ସ୍ମାରକ ରୂପେ ସେହି ମାର୍କେଟ ଘର ସାଧାରଣ ଚାନ୍ଦାରେ ନିର୍ମିତ ହୋଇଥିଲା ମ୍ୟୁନିସିପାଲିଟି ଅଫିସ ସେହିଠାରେ ଥିଲା ଏବଂ ଏବେ ସୁଦ୍ଧା ସେହିଠାରେ ରହିଅଛି । ମ୍ୟୁନିସିପାଲିଟିର କାର୍ଯ୍ୟକୁ ଗୌରୀଶଙ୍କର ନିର୍ବାଚନମୂଳକ କରିବାପାଇଁ ବହୁତ ଦାବୀ କରିଥିଲେ ଏବଂ ୧୮୮୭ ବେଳକୁ ନଗରବାସୀ ସେହି ଅଧିକାର ପାଇଲେ । ନିଜେ ଗୌରୀଶଙ୍କର ମଧ୍ୟ କଟକ ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ହୋଇ ପାରିଥିଲେ ଏବଂ କଟକ ସହରର ଉନ୍ନତି ପାଇଁ ଅନେକ କାମ କରିଥିଲେ ।

ଉତ୍କଳ ଦୀପିକା ୧୮୬୬ ଖ୍ରୀଷ୍ଟାବ୍ଦର ନଅଙ୍କ ବେଳେ ପ୍ରଥମେ ପ୍ରକାଶିତ ହୋଇଥିଲା । ସେତେବେଳେ ଦେଶର ଯେଉଁ ହାହାକାର ତାହାର କରୁଣ କାହାଣୀ ଉତ୍କଳ ଦୀପିକାର ପ୍ରଥମ ବର୍ଷଟିରେ ପ୍ରକାଶ ପାଇଥିଲା । ସେତେବେଳେ ଗୌରୀଶଙ୍କର ବାବୁ ଖୁବ୍ ନିର୍ଭୀକ ଭାବରେ ଖଜଣାଛାଡ଼, ବନ୍ଦୋବସ୍ତ ରହିତକରଣ ଏବଂ ସାହାଯ୍ୟ କମିଟିମାନ ସ୍ଥାପନ ସମ୍ବନ୍ଧରେ ପ୍ରବନ୍ଧମାନ ଲେଖି ସରକାରଙ୍କ ଦୋଷତ୍ରୁଟି ଦର୍ଶାଇ ଥିଲେ । ଉତ୍କଳ ଦୀପିକାର ଆନ୍ଦୋଳନ ଦ୍ୱାରା ଓଡ଼ିଶାରେ ଅନ୍ତର ଅନେକ ଦୁଃଖର ଭାର୍ଯ୍ୟମାନ ସମ୍ଭବ ହୋଇ ପାରିଥିଲା ।

ପୁରୀ ମନ୍ଦିରର ପରିଚାଳନା ନିଜ ହାତରେ ରଖି ଗଭର୍ଣ୍ଣମେଣ୍ଟ ଯାତ୍ରୀମାନଙ୍କ ଉପରେ ଗୋଟିଏ ଟିକସ ବସାଇବାକୁ ଚେଷ୍ଟା କରିଥିଲେ । ଏହା ଯେ ଅତ୍ୟନ୍ତ ଅପ୍ରିୟ ଟିକସ ଏଥିରେ ଅଣୁମାତ୍ର ସନ୍ଦେହ ନ ଥିଲା । ମୁସଲମାନମାନେ ଏହିପରି ଟିକସ ବସାଇ ଅପକ୍ଷା ଗାତ ଅପେ ଖୋଲିଥିଲେ ।

ଗୌରୀଶଙ୍କର ଅତ୍ୟନ୍ତ ସାହସର ସହିତ ଏହି ଟିକସ ବିରୁଦ୍ଧରେ ଲେଖାମାନ ଛପାଇ ଥିଲେ ଏବଂ ଏପରି କାର୍ଯ୍ୟର ତୀବ୍ର ନିନ୍ଦା

ଭାବୁଥିଲେ । ସରକାରୀ ନୌକରି କରି କେହି ଏପରି କରିବା କମ୍ ସତ୍-ସାହସର କଥା ନୁହେଁ । ଯାହାହେଉ ଗଭର୍ଣ୍ଣମେଣ୍ଟ ଶେଷକୁ ଏ ଟିକସ ବସାଇବା ବନ୍ଦ କରିଥିଲେ ଏବଂ ପୁରୀ ମନ୍ଦିରକୁ ରାଜବଂଶର ପରିଚାଳନାରେ ଛାଡ଼ି ଦେଇଥିଲେ ।

ଆଗେ କଚେରୀକୁ ଜୋତାପିନ୍ଧି ଗୋରା ହାକିମମାନଙ୍କ ପାଖକୁ ଯିବାର ଏଠା ଲୋକଙ୍କର ଅଧିକାର ନ ଥିଲା । ଏଥିନିମିତ୍ତ ଅନେକ ଭଦ୍ରବ୍ୟକ୍ତି ହାକିମଙ୍କଠାରୁ ଗୁନ୍ଦାମାଡ଼ ମଧ୍ୟ ଖାଇଥିଲେ । ଗୌରୀଶଙ୍କର ଏହି ଜଘନ୍ୟ ପ୍ରଥାର କଠୋର ସମାଲୋଚନା କରି ସେହି ଅଭଦ୍ର ନିୟମ ଉଠାଇ ଦେଇଥିଲେ । ସେତେବେଳେ ଚୁଲା ଟିକସ, ତମାଖୁ ଟିକସ ପ୍ରଭୃତି ବିବିଧ ଟିକସ ମଧ୍ୟ ରହିଥିଲା । ସେସବୁ ମଧ୍ୟ ତାଙ୍କର ଲେଖା ଫଳରେ ଉଠିଯାଇଥିଲା ।

ଗୌରୀଶଙ୍କର ନିଜେ ଖୁବ୍ ସୁକଣ୍ଠଗାୟକ ଓ ବାଦକ ମଧ୍ୟ ଥିଲେ । ପୁରୁଣା ଓଡ଼ିଆ ଗୀତ ସଙ୍ଗୀତ ଛାନ୍ଦ ଓ ଚଉପଦୀ ପ୍ରଭୃତିକୁ ସେ ଖୁବ୍ ଆଦର କରୁଥିଲେ ଏବଂ ମଫସଲର କେହି ଗାଇଲାବାଲା ଲୋକ ଆସିଛନ୍ତି ଶୁଣିଲେ ତାଙ୍କୁ ଆମନ୍ତ୍ରଣ କରି ସଙ୍ଗୀତ ଚର୍ଚ୍ଚା କରୁଥିଲେ । ସେତେବେଳେ କଟକରେ ଅନେକ ବାଈଜୀ ଥିଲେ । ସଙ୍ଗୀତ ଓ ନୃତ୍ୟ ଦ୍ୱାରା ସେମାନେ ଜୀବିକା ଅର୍ଜନ କରୁଥିଲେ ଏବଂ ବଡ଼ଲୋକଙ୍କ ଘରେ ବିବିଧ ଉତ୍ସବରେ ନୃତ୍ୟ ଦେଖାଇବାକୁ ଯାଉଥିଲେ । ଗୌରୀଶଙ୍କର ବାବୁ ବୁଢ଼ା ହେବାଯାଏ ଚୌଧୁରୀ ବଜାର ପାର୍କ ପାଖରେ ଥିବା ମନ୍ଦିର ସାମନାରେ ପ୍ରତିବର୍ଷ ଦୋଳଯାତ୍ରା କରାଇ ନାଚଗୀତର ସମାବେଶ କରୁଥିଲେ ଏବଂ ସେଥିନିମିତ୍ତ ବହୁତ ଖର୍ଚ୍ଚ ମଧ୍ୟ କରୁଥିଲେ । ସହରର ବଡ଼ ବଡ଼ ନାଚଗାଇ ପାରୁଥିବା ବେଶ୍ୟାମାନଙ୍କୁ ସେ ସେଠାକୁ ଡକାଇ ଭଲ ପୁରସ୍କାର ମଧ୍ୟ ଦେଉଥିଲେ । ଏହାଛଡ଼ା ସଙ୍ଗୀତ ଚର୍ଚ୍ଚା କରୁଥିବା ଅନେକ ବେଶ୍ୟାଙ୍କୁ

ସେ ସ୍ତମ୍ଭନର ଅର୍ଥ ସାହାଯ୍ୟ ମଧ୍ୟ ଦେଉଥିଲେ । ଏତଦ୍ ସଙ୍ଗୀତ ଓ ପ୍ରାଚୀନ ଛନ୍ଦ ଆଦି ପ୍ରତି ଅତ୍ୟଧିକ ଆଗ୍ରହ ଯୋଗୁଁ ସେ ଘରେ ପୁରୁଣା ଓଡ଼ିଆ ପୋଥିମାନ ସଂଗ୍ରହ କରି ପଣ୍ଡିତମାନଙ୍କୁ ଲଗାଇ ତହିଁର ବିଶୁଦ୍ଧ ସଂସ୍କରଣମାନ ପ୍ରସ୍ତୁତ କରିବାକୁ ପୁରାଣ ପ୍ରକାଶିକା କୋମ୍ପାନୀ ଗୋଟିଏ ମଧ୍ୟ ଗଢ଼ିଥିଲେ । ଏ କଥା ଅନ୍ୟତ୍ର କୁହାଯିବ ।

ତାଙ୍କର ସବୁ କାମ ସେ ଯେପରି ଶୃଙ୍ଖଳାରେ ଏବଂ ଯେପରି ସମୟ ଲଗି କରୁଥିଲେ ତାହା ଦେଖିଲେ ବିସ୍ମିତ ହେବାକୁ ହୁଏ । ପ୍ରତ୍ୟହ ସେ ଯେଉଁ ସମୟରେ ପ୍ରିଣ୍ଟିଂ କୋମ୍ପାନୀକୁ ଯା ଆସ କରୁଥିଲେ ତାହା ଘଣ୍ଟା କଣ୍ଟା ଅନୁସାରେ ହେଉଥିଲା । ମିନିଟିଏ କି ଅଧମିନିଟିଏ ଏ ପାଖ ସେ ପାଖ ହେଉ ନଥିଲା । ତାଙ୍କ ଆଗମନରୁହିଁ କର୍ମଚାରୀମାନେ ଏବଂ ବାଟୋଇମାନେ ଘଣ୍ଟା କେତେ ବାଜିଥିବ ଠଉରେଇ ପାରୁଥିଲେ । କାଗଜ କାଳି ସମ୍ବନ୍ଧରେ ସେ ଖୁବ୍ ଯତ୍ନବାନ୍ ଥିଲେ ଏବଂ ସାମାନ୍ୟ ଛୋଟ କାଗଜ ଖଣ୍ଡେ ସୁଦ୍ଧା ନଷ୍ଟ କରୁ ନ ଥିଲେ । ଡାକରେ ଯେତେ ଯେତେ ଚିଠି ଆସୁଥିଲା ସେ ତହିଁର ଲଫାଫା ଉପରେ ଛାପିବାପାଇଁ ଲେଖାମାନ ଲେଖୁଥିଲେ ଏବଂ ନିଜର ପୁଅ ନ ଥିଲେ ମଧ୍ୟ ସେ ବଡ଼ ଭାଇ ଓ ସାନ ଭାଇଙ୍କ ପିଲାପିଲିଙ୍କୁ ନିଜ ପିଲା ପରି ସ୍ନେହ ଆଦରରେ ବଢ଼ାଇ ଥିଲେ । ସାନ ଭାଇ ରାମଶଙ୍କରଙ୍କୁ ପାଠ ପଢ଼ାଇ ମଣିଷ କରିଥିଲେ ଏବଂ ତାଙ୍କୁ ଓଡ଼ିଆ ଭାଷାରେ ବହି ଲେଖିବାକୁ ଉତ୍ସାହ ଦେଉଥିଲେ ।

ବକ୍ତୃତା କିମ୍ବା ଆତ୍ମପ୍ରଚାର କରି ଯଶ ଖ୍ୟାତି ଅର୍ଜିବା ତାଙ୍କର ପ୍ରକୃତି ନ ଥିଲା । ସେ ଥିଲେ ଗୁପ୍ତ ସାଧକ ଓ ନୀରବ କର୍ମୀ ।

ବଙ୍ଗ ଦେଶରୁ କୌଣସି ବିଶିଷ୍ଟ ବଙ୍ଗାଳୀ ଭଦ୍ରବ୍ୟକ୍ତି କଟକ ଆସିଲେ ଗୌରୀଶଙ୍କର ବାବୁ ତାଙ୍କର ଅଭ୍ୟର୍ଥନା କରୁଥିଲେ ଅଥଚ

ସବୁବେଳେ ନିଜକୁ ଓଡ଼ିଆ ଏହି ଭାବରେ ଆତ୍ମପ୍ରକାଶ କରି ଓଡ଼ିଆ ଓ ଓଡ଼ିଶାର ମଙ୍ଗଳ କାମନାରେ ସେପରି କରୁଥିଲେ । ଏ କଥାର ବହୁତ ଦୃଷ୍ଟାନ୍ତ ପୁରୁଣା ଉତ୍କଳ ଦୀପିକାରୁ ଦେଖିବାକୁ ମିଳେ ।

ନିଜ ଲୋକ କିମ୍ବା ପର ଲୋକ କାହାରି ତ୍ରୁଟି ଦେଖିଲେ ସେ ତାହାକୁ ସ୍ପଷ୍ଟଭାବରେ ପ୍ରକାଶ କରି ଦେଉଥିଲେ । ଏହି ସ୍ପଷ୍ଟବାଦୀତା ଯୋଗୁଁ ସେ ଏକାଧିକବାର ବିପଦରେ ପଡ଼ିଲେ ମଧ୍ୟ ସେଥିରୁ କ୍ଷାନ୍ତ ହୋଇ ନ ଥିଲେ । ଥରେ ତାଙ୍କର ଜଣେ ପୁତୁରା କଟକର ଜଣେ ଜମିଦାରଙ୍କ ଘରେ ଗୃହକାର୍ଯ୍ୟ ଗ୍ରହଣ କରିଥିଲା । ପୁତୁରାଟିର ଆଚରଣ ମନ୍ଦ ଥିଲା । ଗୌରୀଶଙ୍କର ନିଜେ ଅଯାଚିତ ଭାବରେ ଉକ୍ତ ଜମିଦାରଙ୍କ ଘରକୁ ଯାଇ ନିଜ ପୁତୁରାର ମନ୍ଦ ଗୁଣଗୁଡ଼ିକ କହି ଭଦ୍ରବ୍ୟକ୍ତିଙ୍କୁ ସତର୍କ କରି ଦେଇ ଆସିଥିଲେ ।

୧୯୦୫ ବେଳକୁ ବଙ୍ଗଭଙ୍ଗ ଯୋଗୁଁ ସ୍ୱଦେଶୀ ଆନ୍ଦୋଳନ ପ୍ରବଳ ହୋଇଥିଲା । ଓଡ଼ିଶାରେ ଥିବା କେତେ ବଙ୍ଗାଳି ଜମିଦାର ଉକିଲ ଏବଂ ଅନ୍ୟ କର୍ମଚାରୀମାନେ ସେତେବେଳେ ନିଜର ଗୋଟିଏ ବଙ୍ଗାଳୀ ଅନୁଷ୍ଠାନ ଗଢ଼ି ପ୍ରବାସୀ ବଙ୍ଗ ସମିତି ନାମ ଦେଇଥିଲେ । ଏହି ସମିତି ଅନେକ ଦିନଯାଏ ଜୀବିତ ଥିଲା ଏବଂ ରାଜନୀତିରେ ଓଡ଼ିଆ ସ୍ୱାର୍ଥରେ ବାଧା ଜାତ ମଧ୍ୟ କରିଥିଲା । ଗୌରୀଶଙ୍କର ବାବୁ ଏହାର ବିରୁଦ୍ଧରେ ହୋମିଓପାଇଲ ବଙ୍ଗାଳୀ ସମିତି ଗଢ଼ି ସବୁ ବିଷୟରେ ଉତ୍କଳ ସମ୍ମିଳନୀର ସମର୍ଥନ କରିଥିଲେ ଏବଂ ସବୁ କାର୍ଯ୍ୟରେ ଉତ୍କଳବାସୀଙ୍କ ଆନ୍ଦୋଳନକୁ ସାହାଯ୍ୟ କରିଥିଲେ । ସେ ସ୍ପଷ୍ଟଭାବରେ ଦୀପିକାରେ ଲେଖିଥିଲେ ଯେ ପ୍ରବାସୀ ବଙ୍ଗ ସମିତି ଦ୍ୱାରା ଓଡ଼ିଆ ବଙ୍ଗାଳୀ ବିଦ୍ୱେଷଭାବ ସୃଷ୍ଟି ହେବା ଅନିବାର୍ଯ୍ୟ; ଏଣୁ ସେପରି ସାମ୍ପ୍ରଦାୟିକ ସମିତି ଗଢ଼ିବା ଅନୁଚିତ । ତେବେ ନିଜେ ଜାତିରେ କାୟସ୍ଥ ଥିବାରୁ ତାଙ୍କର କାୟସ୍ଥ ଜାତି ପ୍ରତି ଶ୍ରଦ୍ଧାର ଅନୁରାଗ ଥିଲା ।

ସେଥିପାଇଁ ସେ ନିଖିଳ ଭାରତ କାୟସ୍ଥ ମହାସଭାରେ ସଭ୍ୟ ହୋଇଥିଲେ ଏବଂ ସଭାର ନିର୍ଦ୍ଦେଶମତେ ପଇତା ପିନ୍ଧିବା ନିଜ ଜାତିରେ ପ୍ରଚଳନ କରିଥିଲେ ।

ରାଜନୈତିକ କ୍ଷମତା ହାସଲ କରିବାକୁ କଂଗ୍ରେସ ମହାସଭା ପ୍ରତିଷ୍ଠା ହେଲାରୁ ସେ ତହିଁର ସଭ୍ୟ ହୋଇ ଓଡ଼ିଶାର ପ୍ରତିନିଧି ହିସାବରେ ଅନେକ ଥର କଂଗ୍ରେସ ଅଧିବେଶନରେ ଯୋଗଦେଇଥିଲେ ଏବଂ ଶେଷଥର କରାଚୀଠାଏ ମଧ୍ୟ ଯାଇଥିଲେ । ଏ ସବୁ ସେ ନିଜ ଖର୍ଚ୍ଚରେ କରୁଥିଲେ । ସେତେବେଳକୁ ଓଡ଼ିଶାରେ ଅନ୍ୟ କେହୁ କଂଗ୍ରେସର ନାମ ସୁଦ୍ଧା ଜାଣି ନ ଥିଲେ କହିଲେ ଚଳେ । ସରକାରୀ ଚାକିରୀ ଭାବରେ ନିଜର ପୂର୍ଣ୍ଣ କର୍ତ୍ତବ୍ୟ ସମ୍ପାଦନ କଲା ପରେ ସେ ପ୍ରିଣ୍ଟିଂ କୋମ୍ପାନୀ ପରିଚାଳନା କରିବା, ନିଜର ବ୍ୟକ୍ତିଗତ କାମ ତୁଲାଇବା, ଉତ୍କଳ ଦୀପିକା ସମ୍ପାଦନ କରିବା ଏବଂ ପୁରାଣ ପ୍ରକାଶିକା କୋମ୍ପାନୀ କାର୍ଯ୍ୟ ବୁଝିବା ଛଡ଼ା ଅନ୍ୟାନ୍ୟ ଅନେକ ସାଧାରଣ କାର୍ଯ୍ୟରେ ଯୋଗଦେବାପାଇଁ ସମୟ ନିର୍ଦ୍ଦିଷ୍ଟ କରି ରଖିଥିଲେ ଏବଂ ସଦା ସର୍ବଦା ସମୟ ଅନୁସାରେ କାର୍ଯ୍ୟ କରୁଥିଲେ । ବସ୍ତୁତଃ ରାତିରେ ଅଳ୍ପ କେତେ ଘଣ୍ଟା ବିଶ୍ରାମ ନେବା ଛଡ଼ା ବାକି ଦିନମାନ ସେ ନାନାଦି କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ । ଏଇଥିପାଇଁ ସମସ୍ତେ ତାଙ୍କୁ ଶ୍ରଦ୍ଧାରେ କହୁଥିଲେ ସେ ଜଣେ କର୍ମଯୋଗୀ—କାମ କରିବା ଛଡ଼ା ଆଉ କିଛି ଜାଣନ୍ତି ନାହିଁ ।

ଦୀର୍ଘକାଳ ସରକାରୀ କାମ କରି ସେ ୧୮୯୨ ଖ୍ରୀଷ୍ଟାବ୍ଦରେ ଅବସର ଗ୍ରହଣ କଲେ ଏବଂ ସେହିଦିନଠାରୁ ପ୍ରିଣ୍ଟିଂ କୋମ୍ପାନୀ ଓ ଉତ୍କଳ ଦୀପିକା କାମରେ ମନପ୍ରାଣ ଢାଳି ଦେଇଥିଲେ । ଏହି କାମ ତୁଲାଇବାକୁ ତାଙ୍କୁ ଅନେକ ବଡ଼ ବଡ଼ ବନ୍ଧୁ ଓ ସମ୍ପ୍ରଦାୟ ବର୍ଗର ପଢ଼ିବାକୁ ପଡ଼ୁଥିଲା । ତାହାଛଡ଼ା ପ୍ରତ୍ୟହ ଅନେକ ଘଟଣାର

ଉତ୍ତର ମଧ୍ୟ ଦେବାକୁ ହେଉଥିଲା । ସେ ସବୁ ସେ ନିଜେ କରୁଥିଲେ । ଉତ୍କଳ ଦୀପିକା ସମ୍ପର୍କରେ ସେ କୃତାନ୍ତ ମିତବ୍ୟୟୀ ଥିଲେ । ସେଥିନିମିତ୍ତ ଅତି ସାମାନ୍ୟ କାଗଜ ଖଣ୍ଡିଏ ମୁଦ୍ଧା ନଷ୍ଟ ନକରି ସାଇତି ରଖୁଥିଲେ ଏବଂ ସେହିସବୁ ରଦ୍ଦି କାଗଜରେ ଦୀପିକା ପାଇଁ ଲେଖା ଲେଖୁଥିଲେ ।

ତାଙ୍କର ଅକ୍ଳାନ୍ତ ପରିଶ୍ରମ ଫଳରେ କଟକ ପ୍ରିଣ୍ଟିଂ କୋମ୍ପାନୀ ବହୁତ ଉନ୍ନତି କରିଥିଲା ଏବଂ କୋମ୍ପାନୀର ଅଂଶୀଦାରମାନେ ପ୍ରତିବର୍ଷ ଉଚ୍ଚହାରରେ ମୁନାଫା ପାଉଥିଲେ । ପ୍ରିଣ୍ଟିଂ କୋମ୍ପାନୀ ସହିତ ସେ ଏପରି ଭାବେ ଜଡ଼ିତ ହୋଇଥିଲେ ଯେ ଲୋକେ ସେହି ନାମ ପରିବର୍ତ୍ତେ ଗୌରୀଶଙ୍କର ଛାପାଖାନା ବୋଲି କହୁଥିଲେ ଏବଂ ଏହି ନାମରେ ମଧ୍ୟ ମଫସଲରୁ ଚିଠିପତ୍ର ଆସୁଥିଲା । ଯେଉଁ ସାମାନ୍ୟ ମୂଳଧନରୁ ସେ ଏତେ ବଡ଼ ପ୍ରିଣ୍ଟିଂ କୋମ୍ପାନୀ ଗଢ଼ି ପାରିଥିଲେ ସେକଥା ଭାବିଲେ ବିସ୍ମିତ ହେବାକୁ ପଡ଼େ ।

ପ୍ରିଣ୍ଟିଂ କୋମ୍ପାନୀରୁ ନିଜର ଅଂଶ ଓ ପାରିଶ୍ରମିକ ଭାବରେ ସେ ଯେଉଁ ଅର୍ଥ ଗ୍ରହଣ କରୁଥିଲେ ତାହା ଦ୍ୱାରା ସେ ଅନେକ ଦେଶ ହିତକର କାମ କରି ଯାଇଅଛନ୍ତି । ଆଗେ କଟକ ସହରରେ ସଭାସମିତି କରିବାକୁ ଘର ଖଣ୍ଡିଏ ମିଳୁନଥିଲା । ସହରବାସୀଙ୍କର ଏହି ଅଭାବ ଦୂର କରିବାପାଇଁ ସେ ମ୍ୟୁନିସିପାଲିଟି ହତା ମଧ୍ୟରେ ୧୦ହଜାର ଟଙ୍କା ଖର୍ଚ୍ଚକରି ଟାଉନହଲ ନିର୍ମାଣ କରିଦେଇ ଅଛନ୍ତି । ସେ ଘର ଖଣ୍ଡି ଅଦ୍ୟାପି ସଭାସମିତି ପାଇଁ ବ୍ୟବହୃତ ହେଉଅଛି । ତେବେ ଲୋକସଂଖ୍ୟା ବୃଦ୍ଧି ଯୋଗୁ ବର୍ତ୍ତମାନ ବଡ଼ ବଡ଼ ସଭା ପାଇଁ ସେଥିରେ ଜାଗା ହେଉନାହିଁ । ଟାଉନହଲ ସହିତ ସେ ଗୋଟିଏ ଲାଇବ୍ରେରୀ ମଧ୍ୟ ସ୍ଥାପନ କରିଥିଲେ । ପୂର୍ବେ କଟକରେ ଏଭଳି

ଅନୁଷ୍ଠାନ ନଥିଲା । ସ୍କୁଲ କଲେଜର ଛାତ୍ରମାନେ ଇଚ୍ଛାକଲେ ମଧ୍ୟ ପଢ଼ିବାକୁ ବହି ପାଉନଥିଲେ । ଲକ୍ଷନ୍ଦ୍ରବାବୁ ସେ କେତେଖଣ୍ଡି ଦୈନିକ ଓ ସାପ୍ତାହିକ ମଧ୍ୟ ଯୋଗାଉଥିଲେ ଏବଂ ଏହାର ପରିଚାଳନା ଭାର କଟକ ମ୍ୟୁନିସିପାଲିଟି ଗ୍ରହଣ କରିଥିଲେହେଁ କରିନଥିଲେ ।

ଏହି ଟାଉନହଲଠାରେ ଅନେକ କାଳପର୍ଯ୍ୟନ୍ତ ସନ୍ଧ୍ୟାକୁ ଗୋଟିଏ କ୍ଲବ ମଧ୍ୟ ବସି ସଙ୍ଗୀତ ଚର୍ଚ୍ଚା କରୁଥିଲା ମାତ୍ର ଶେଷକୁ ସବୁ ବନ୍ଦ ହୋଇଗଲା । ବର୍ତ୍ତମାନ ଉକ୍ତ ଟାଉନହଲଟି ଗୋଟିଏ ପାଠାଗାରରେ ପରିଣତ ହୋଇଅଛି ।

ଏହାଛଡ଼ା ଗୌରୀଶଙ୍କର ବାବୁ ବହୁ ଛାତ୍ରଛାତ୍ରୀଙ୍କୁ ଅର୍ଥିକ ସାହାଯ୍ୟ କରୁଥିଲେ ଏବଂ ନିଜ କାୟସ୍ଥଜାତି ଛାତ୍ରଙ୍କ ପାଇଁ କାଠଗଡ଼ା ସାହିରେ କାୟସ୍ଥ ବୋର୍ଡିଂ ନାମକ ଏକ ଛାତ୍ରାବାସ ସ୍ଥାପନ କରି ଦେଇଥିଲେ । ସେଠାରେ ନିଜ ଜାତିର ପିଲାମାନେ ରହି ଶସ୍ତା ଓ ସୁବିଧାରେ ପାଠ ପଢ଼ନ୍ତି । ସ୍ୱଜାତୀୟ କେତେ ବିଧବାଙ୍କୁ ସେ ଧାଈ କାମ ଶିଖାଇବାକୁ ସାହାଯ୍ୟ ମଧ୍ୟ କରୁଥିଲେ । ସମଗ୍ର ଉତ୍କଳଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବାପାଇଁ ବିଧିବଦ୍ଧ ଆନ୍ଦୋଳନ ମଧୁବାବୁଙ୍କ ନେତୃତ୍ୱରେ ୧୯୦୩ଠାରୁ ଆରମ୍ଭ ହୋଇଥିଲା । ଗୌରୀଶଙ୍କର ବାବୁ ଏହି ମଧୁବାବୁଙ୍କ ତରୁଣ ଜୀବନ ସମ୍ପର୍କରେ ୧୮୬୬ ଖ୍ରୀଷ୍ଟାବ୍ଦରେ ଉକ୍ତ ମନ୍ତବ୍ୟ କରିଥିଲେହେଁ ପୁଣି ତାଙ୍କର ନେତୃତ୍ୱ ଅକୁଣ୍ଠ ଚିତ୍ତରେ ସ୍ୱୀକାର କରି ଉତ୍କଳ ସମ୍ମିଳନୀକୁ ସମର୍ଥନ କରିଥିଲେ; କିନ୍ତୁ ଉତ୍କଳ ସମ୍ମିଳନୀର ବହୁ ପୂର୍ବରୁ ୧୮୯୮ ଖ୍ରୀଷ୍ଟାବ୍ଦର କଟକ ଦରବାରରେ ପଣ୍ଡିତ ଗୋବିନ୍ଦ ରଥ ଗୋଟିଏ କବିତା ଲେଖି ଦରବାରଠାରେ ବିତରଣ କରିଥିଲେ । ଉକ୍ତ କବିତାରେ ଉତ୍କଳ ଦେଶ ମିଶଣର ପ୍ରଥମ ଦାବୀ ଅଗତ କରାଯାଇଥିଲା ଏବଂ ଏହା

ଗୌରୀଶଙ୍କର ନିଜର ଭାଷାରେ ଦୀପିକାରେ ସମର୍ଥନ କରୁଥିଲେ । ଲେଖକଙ୍କ କବିତାଟି ନିମ୍ନରେ ଦିଆଗଲା ।

ଅସଂଖ୍ୟ ଆଇନବନ୍ଧା ବିଧିମାନ,
ମନେଘଉଡ଼ି ଅମ୍ଭେହେଉ ହତଜ୍ଞାନ ।
ଉତ୍କଳ ପାଇଁକି ସ୍ୱତନ୍ତ୍ର ବିଧାନ,
କରିଦିଅ ଲାଟ ପ୍ରାର୍ଥନା ଏତେ ।
ଗଞ୍ଜାମ ସମ୍ବଲପୁରକୁ ଏଥର,
କଟକ ସଙ୍ଗେ ଆଣି ଯୋଗକର ।
ଟେକ ଛକପାତ ହେଲତ ଦେଶର,
ଆଉ କାହା ପାଇଁ ବିଳମ୍ବ କେତେ ?

ବସ୍ତୁତଃ ଏହି ଗୀତର ପରବର୍ତ୍ତୀ ସଂସ୍କରଣ ହେଉଛି ବ୍ରହ୍ମପୁର ସଭା ଏବଂ କଟକର ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା । କଟକରେ କୋଠାବାଡ଼ି ଆଦି ଅଧିକାଂଶ ସମ୍ପତ୍ତି ରହିଥିବାରୁ ସେ କଟକ ପାଇଁ ଏସବୁ କରିଥିଲେ ଏକଥା ସତ କିନ୍ତୁ ତା ବୋଲି ସେ ନିଜର ଜନ୍ମ ଗ୍ରାମ ଅସ୍ତରଣକୁ ଭୁଲି ନଥିଲେ । ସେ ଉକ୍ତ ଗ୍ରାମରେ ନିଜ ବ୍ୟୟରେ ଗୋଟିଏ ଡାକ୍ତରଖାନା, ଗୋଟିଏ ମାଇନର ସ୍କୁଲ ଏବଂ ଗୋଟିଏ ବାଳିକା ବିଦ୍ୟାଳୟ ବସାଇ ଥିଲେ । ଏଥିନିମିତ୍ତ କୋଠାବାଡ଼ି ନିର୍ମାଣର ସମସ୍ତ ବ୍ୟୟ ସେ ନିଜେ ବହନ କରିଥିଲେ ଏବଂ ବରାବର ଏସବୁ କାମ ଶୃଙ୍ଖଳାରେ ଚଳୁଛି କି ନାହିଁ ତାହାର ତତ୍ତ୍ୱ ମଧ୍ୟ ନେଉଥିଲେ । କଟକରେ ପ୍ୟାରୀମୋହନ ଏକାଡେମୀ ସ୍ଥାପନ ଦିନଠାରୁ ସେ ତାହାର କମିଟିରେ ମଧ୍ୟ ଦୀର୍ଘକାଳ ମେମ୍ବର ହୋଇ ରହିଥିଲେ ।

ଦୀପିକା ପ୍ରକାଶର ଏକବର୍ଷ ପରେ ୧୮୬୭ ଖ୍ରୀଷ୍ଟାବ୍ଦରେ ବାବୁ ରଙ୍ଗଲାଲ ବାନାର୍ଜିଙ୍କ ସମ୍ପାଦକତ୍ୱରେ ଗୌରୀଶଙ୍କର ଉତ୍କଳ ଭାଷୋ-

ଦୀପନୀ ନାମକ ସଭା ପ୍ରତିଷ୍ଠା କରି ନିଜେ ତହିଁର ସମ୍ପାଦକ ହୋଇଥିଲେ । ସେହି ସଭା ପ୍ରଚେଷ୍ଟାରେ ପ୍ରଥମ ଓଡ଼ିଆ କାବ୍ୟ ପୁରାଣମାନ ପୁରାଣ ପ୍ରକାଶିକା କୋମ୍ପାନୀଦ୍ୱାରା ପ୍ରକାଶିତ ହୋଇଥିଲା । ଏହାଦ୍ୱାରା ଓଡ଼ିଶାରେ ଘରେ ଘରେ ଭାଗବତ ରାମାୟଣ ମହାଭାରତ ସ୍ଥାନ ପାଇ ପାରିଲା ଏବଂ ଜନସାଧାରଣ ଏସବୁ ଶାସ୍ତ୍ର ପାଠକରି ପ୍ରାଚୀନ ଓଡ଼ିଆ କବିଙ୍କର ମହିମା ବୁଝି ପାରିଲେ । ପୁରାଣ ପ୍ରକାଶିକା କୋମ୍ପାନୀ ମଧ୍ୟ ଯଥେଷ୍ଟ ଲାଭ କରିଥିଲା ।

ଗୌରୀଶଙ୍କର ଶେଷକାଳ ଦେଶ ହିତକର କାମରେ ଲାଗି ଯେତେ ଯାହା ଯାହା କରି ପାରିଥିଲେ ତାହା ସରକାରଙ୍କ ଦୃଷ୍ଟିକୁ ଆସିବାରୁ ସରକାର ତାଙ୍କ ଉପରେ ସନ୍ତୁଷ୍ଟ ହୋଇଥିଲେ ଅର୍ଥାତ୍ ଏହି ବ୍ରିଟିଶ ସରକାର ଦିନେ ତାଙ୍କୁ ରାଜଦ୍ରୋହୀ ବୋଲି ଧରପକଡ଼ ମଧ୍ୟ କରିଥିଲେ । ସରକାରଙ୍କୁ ସମାଲୋଚନା କରୁଥିବା ସାମ୍ବାଦିକଙ୍କୁ ପୂର୍ବେ ଗଭର୍ଣ୍ଣମେଣ୍ଟ ସହଜରେ ଉପାଧି ପ୍ରଭୃତି ଦେଉନଥିଲେ । ଗୌରୀଶଙ୍କର ମଧ୍ୟ ଏଭଳି ଶୁଖିଲା ଉପାଧିର ଅସାରତା ସମ୍ବନ୍ଧରେ ପ୍ରବନ୍ଧ ଛାପିଥିଲେ ।

ତଥାପି ଗୁଣୀ ଲୋକର ସମାଦର ରାଜଶକ୍ତିର କର୍ତ୍ତବ୍ୟ । ଏହି ଯୁକ୍ତି ୧୯୧୬ ଖ୍ରୀଷ୍ଟାବ୍ଦରେ ବଡ଼ଲାଟ ଗୌରୀଶଙ୍କରଙ୍କୁ ରାୟ ବାହାଦୁର ଉପାଧି ଦେଇଥିଲା । ଉପାଧି ପାଇଲାବେଳକୁ ସେ ଜୀବନର ଶେଷ ସୀମାରେ ପହଞ୍ଚିଥିଲେ ବୋଲି କୁହାଯାଇପାରେ ।

ତାଙ୍କର ଉପାଧି ପ୍ରାପ୍ତିରେ ଓଡ଼ିଶାର ଅନେକ ବ୍ୟକ୍ତି ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ମଧୁବାବୁ ମଧ୍ୟ ତାଙ୍କ ଘରକୁ ଆସି ସମ୍ବର୍ଦ୍ଧନା କରି ଯାଇଥିଲେ ଏତେବେଳକୁ ଗୌରୀଶଙ୍କରଙ୍କ ବୟସ ହୋଇଥିଲା ୭୮ ବର୍ଷ ।

ଉପାଧି ବିତରଣ ନିମିତ୍ତ ଯେଉଁଦିନ ଦରବାର ହୋଇଥିଲା ସେଦିନ ଗୌରୀଶଙ୍କର ବାବୁ ନିଜ ଗ୍ରାମରେ ବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଯିବାକୁ ସ୍ଥିର କରିଥିଲେ । ସୁତରାଂ ଏ ଦୁଇଟା କାମ ଏକ ସମୟରେ ପଡ଼ିଲା । ଅନ୍ୟ କେହି ହୋଇଥିଲେ ଲାଟ ସାହେବଙ୍କଠାରୁ ଉପାଧି ପାଇବା ପାଇଁ ଦରବାରକୁ ଯିବା ଅଧିକ ଜରୁରୀ ବୋଲି ଭାବି ଥାଆନ୍ତା ମାତ୍ର ଗୌରୀଶଙ୍କର ଠିକ ଓଲଟା କଲେ । ସେ ଦରବାର ନିମନ୍ତ୍ରଣ ଫେରାଇ ଦେଇ ଗ୍ରାମର ନିମନ୍ତ୍ରଣ ରକ୍ଷା କଲେ । ସୁତରାଂ ଉପାଧି ପାଇବାର ଯେଉଁ ଅସାର ଆଡ଼ମ୍ବର ତାହା ତାଙ୍କ ଭାଗ୍ୟକୁ ଘଟିଲା ନାହିଁ । ତାଙ୍କର ଏତାଦୃଶ କାର୍ଯ୍ୟରେ ଅନେକ ସରକାରୀ ହାକିମ ଏବଂ ଆତ୍ମୀୟ ବିରକ୍ତ ହେଲେ ହେଁ ଗୌରୀଶଙ୍କର ମୋଟେ ଭ୍ରୂକ୍ଷେପ କରି ନଥିଲେ ।

ଏହି ରାୟ ବାହାଦୁର ଉପାଧି ସେ ବର୍ଷଟିଏ ସୁଦ୍ଧା ଭୋଗ କରି ନାହାନ୍ତି ବରଂ ପାଇଲା ପରେ ବିଶେଷ କୁଆଡ଼େ ଯା ଆସ କଲେ ନାହିଁ । ସେତେବେଳକୁ ପ୍ରଥମ ମହାଯୁଦ୍ଧ ଚାଲିଥାଏ । ଏହିପରି ଅବସ୍ଥାରେ ୧୯୧୭ ଖ୍ରୀଷ୍ଟାବ୍ଦରେ ୭୯ ବର୍ଷ ବୟସରେ ସେ ଦେହତ୍ୟାଗ କଲେ ।

ଖୋଜି ବସିଲେ ଗୌରୀଶଙ୍କର ଆମ ଦେଶର ପ୍ରଥମ ଇଂରେଜୀ ଶିକ୍ଷିତମାନଙ୍କ ମଧ୍ୟରୁ ଜଣେ । ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟ, ସଂସ୍କୃତ ଏବଂ ଅନ୍ୟ ସବୁ କାର୍ଯ୍ୟ ତାଙ୍କର ଏକାଗ୍ର ଏବଂ ଏକକ ସାଧନା ଦ୍ୱାରା ଓଡ଼ିଶାରେ ସମ୍ଭବ ହୋଇଅଛି । ଯେତେବେଳେ ଏ ଦେଶରେ କେହି ନଥିଲେ, କେହି ସରକାରଙ୍କ ପାଖରେ ଦେଶର ଅଭିହାର ଜଣାଇବାକୁ ସାହାସ କରୁ ନଥିଲେ ସେତେବେଳେ ସେ ସାମାନ୍ୟ ସରକାରୀ କିରାଣୀ କାମ କରୁଥିଲେ ହେଁ

ସମ୍ବାଦପତ୍ର ପ୍ରକାଶ କରି ତହିଁର ସମ୍ପାଦକ ହୋଇଥିଲେ । ସେ ସମୟରେ ଓଡ଼ିଶାରେ ମିସନାରୀମାନଙ୍କର ଶ୍ରୀରାମପୁରଠାରୁ ପ୍ରକାଶିତ ମାସିକ ପତ୍ରିକା ଛଡ଼ା ଅନ୍ୟ କିଛି ପତ୍ରିକା ନ ଥିଲା । ଓଡ଼ିଶା ସେତେବେଳେ ବଙ୍ଗ ପ୍ରଦେଶର ଛୋଟ ଲାଟଙ୍କ ଅଧୀନ ଥିଲା । ଏଣୁ କରି ଓଡ଼ିଶା ସମ୍ବନ୍ଧରେ ସମସ୍ତ ବିଷୟର ଶେଷ ନିଷ୍ପତ୍ତି କଲିକତାରୁ ହେଉଥିଲା । ଲାଟ ସାହେବ ଓଡ଼ିଶା ଲୋକଙ୍କର ମତାମତ ଜାଣିପାରୁ ନ ଥିଲେ । କଲିକତାର ଦେଶୀୟ ସମ୍ବାଦପତ୍ରରେ ଓଡ଼ିଶା କଥା ପ୍ରାୟ ବାହାରୁ ନ ଥିଲା ।

ଗୌରୀଶଙ୍କର ଏକାକୀ ଏହି ଅଭାବ ନିମିତ୍ତ ଓଡ଼ିଶାର ସମସ୍ତ ପ୍ରକାର ଅଭାବ ଅଭିଯୋଗମାନ ଉତ୍କଳ ଦୀପିକାରେ ପ୍ରକାଶ କରିବାରୁ ଏବଂ ନିଜେ ସରକାରୀ ଟ୍ରାନ୍ସଲେଟର ହୋଇଥିବାରୁ ଓଡ଼ିଶା କଥା କ୍ରମେ ଛୋଟ ଲାଟଙ୍କ ପାଖରେ ପହଞ୍ଚିଲା । ନଅଙ୍କ ଦୁର୍ଭିକ୍ଷ ବେଳେ ଦୀପିକା ପ୍ରଥମ ପ୍ରକାଶ ହୋଇ ଥିବାରୁ ଗୌରୀଶଙ୍କରଙ୍କ ପ୍ରଥମ କାମ ଥିଲା ଦୁର୍ଭିକ୍ଷ ସମ୍ବନ୍ଧରେ ଦେଶର ଅଭାବ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇବା । ଏ ଦିଗରେ ଯେଉଁ ସବୁ ସରକାରୀ ସ୍ଥାନୀୟ ହାକିମମାନେ ଭୁଲ୍ କରି ଏପରି ଦୁର୍ଯୋଗ ଘଟାଇଥିଲେ ସେମାନଙ୍କର କାର୍ଯ୍ୟକୁ ସେ ଅତି ନିର୍ଭୀକ ଭାବରେ ସମାଲୋଚନା କରିଥିଲେ । ଏଥି ନିମିତ୍ତ ତାଙ୍କୁ ସ୍ଥାନୀୟ ବଡ଼ ବଡ଼ ହାକିମଙ୍କର ବିଷ ଦୃଷ୍ଟିରେ ପଡ଼ି ବହୁତ କଷ୍ଟ ଭୋଗିବାକୁ ପଡ଼ିଥିଲା । ଓଡ଼ିଶାର ଲୋକେ ଭୟ କରି ତାଙ୍କୁ ଉଚିତ ସମର୍ଥନ ନ କଲେ ମଧ୍ୟ ସେ ଏକାକୀ ହାକିମଙ୍କ ବିରୁଦ୍ଧରେ ଲଢି ନିଜର ଲେଖାମାନ ପ୍ରମାଣ କରି ଦେବାରୁ ଖଲାସ ହୋଇଥିଲେ । ଦୀପିକା ଅନ୍ଦୋଳନରୁ ଓଡ଼ିଶାରେ ଶିକ୍ଷା ପ୍ରସାର ପାଇଁ ବେଶୀ ସଂଖ୍ୟକ ସ୍କୁଲ୍ ସ୍ଥାପନ, ଚିକିତ୍ସା ପାଇଁ ଜାଗା ଜାଗା ଡାକ୍ତରଖାନା ସ୍ଥାପନ ସମ୍ଭବ ହୋଇଥିଲା । ତାଙ୍କରି ଯୋଗୁଁ ଓଡ଼ିଶାର ଲୋକେ

ମିଶାଇ ଦେଇ ସମାଜ, ରାଷ୍ଟ୍ର, ଜାତି, ଭାଷା, ସାହିତ୍ୟ ପ୍ରଭୃତିର ସେବା କରିବା ପାଏ ଛାଡିଥିଲେ । ତାଙ୍କ ଅନ୍ତେ ପ୍ରିଣ୍ଟିଂ କମ୍ପାନୀ ଓଡ଼ିଆଙ୍କ ହାତକୁ ଆସି ସମସ୍ତ କାଳାମ ହୋଇଗଲା ଏବଂ ତାହାଁର ଅଭାବ ଓ ଫଳ ଆଦ ଦ୍ୱାରା ଓଡ଼ିଶାରେ ଅନେକଗୁଡ଼ିଏ ସ୍ଥାନ ବଡ ଛପାଖାନା ସ୍ଥାପିତ ହୋଇଅଛି । ତାଙ୍କର ପାଖରେ ଯେଉଁମାନେ ଛପାଖାନା କାମ ଶିକ୍ଷା କରିଥିଲେ ସେମାନେ ଅଜ ବଡ଼ ବଡ଼ ଛପାଖାନାର ମାଲିକ ହୋଇ ବସି ଅଛନ୍ତି ।

୧୯୦୩ ଖ୍ରୀଷ୍ଟାବ୍ଦରେ ଉତ୍କଳ ସାହିତ୍ୟ ସମାଜ ସ୍ଥାପିତ ହେଲା । ଗୌରୀଶଙ୍କର ତାହାଁର ମଧ୍ୟ କର୍ଣ୍ଣଧାର ସ୍ୱରୂପ କାମ କରିଥିଲେ ଏବଂ ତାଙ୍କ ପରେ ତାଙ୍କ ସ୍ଥାନ ଭାଇ ସାହିତ୍ୟ ସମାଜର ଅନେକ ବର୍ଷ ପାଏ ସଭାପତି ହୋଇଥିଲେ । ଏତେ କଲେ ମଧ୍ୟ ଗୌରୀଶଙ୍କର କେତେ-ବେଳେ ନାମ ଯଶର ଆଶା ରଖୁ ନ ଥିଲେ । ଦେଶ ପ୍ରତି ନିଜର କର୍ତ୍ତବ୍ୟଜ୍ଞାନରେ ସେ ଏ ସବୁ କାମ କରିଯାଉଥିଲେ ଏବଂ ବ୍ୟକ୍ତିଗତ ଭାବରେ ଯେଉଁମାନେ ତାଙ୍କର ବିରୁଦ୍ଧରେ ଥିଲେ ସେମାନଙ୍କର ଅନ୍ୟ ଅନେକ କାମକୁ ସେ ମୁକ୍ତ ପ୍ରାଣରେ ସମର୍ଥନ କରୁଥିଲେ । ସତ୍ୟ କହିବା ପାଇଁ ସେ କାହାକୁ ଡରୁ ନ ଥିଲେ । ବହୁଦିନ ଦୀର୍ଘ ୬୦ ବର୍ଷ କାଳ ସେ ଏକାକୀ ଓଡ଼ିଶାରେ ଅନେକ ଦେଖାଇ ନିଜେ ନିରାଡ଼ମ୍ବର ଓ ସରଳ ଜୀବନ ଯାପନ କରୁଥିଲେ ବୋଲି ଲୋକେ ତାଙ୍କୁ ନୀରବ କର୍ମୀ ଆଖ୍ୟା ଦେଇଥିଲେ ।

ଅଜ ସିନା ଜାତି ଓ ଦେଶ ସ୍ୱାଧୀନ ହୋଇଅଛି; ମାତ୍ର ୧୯୨୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ଏ ଦେଶରେ ରାଜନୀତିକ ଅବସ୍ଥା ସମ୍ପୂର୍ଣ୍ଣ ଭିନ୍ନ ଥିଲା । କଂଗ୍ରେସରେ ଗାନ୍ଧିଜୀଙ୍କ ପ୍ରଥା ଚଳିବା ପୂର୍ବରୁ ଗଭର୍ଣ୍ଣମେଣ୍ଟ ଆମ ଦେଶର ରାଜନୈତିକ ଆନ୍ଦୋଳନକୁ ବଜ୍ର ହସ୍ତରେ ଦବାଇ ରଖି ଥିଲେ । ଯେଉଁମାନେ ଅଳ୍ପ ଝାଣ୍ଟୁଆ କଥା କହୁଥିଲେ ସେମାନଙ୍କୁ

ଜେଲ ଦେଉଥିଲେ ଏବଂ ଅଳ୍ପ କଥାରେ ରାଜଦ୍ରୋହ ମକଦ୍ଦମାମାନ ଚଳାଉଥିଲେ । ସେତେବେଳେ ୫ ହାତ ମାପି ଗୃହଖଣ୍ଡେ ଗୃହୀବା ଅମଳ ଥିଲା । ଅଥଚ ସେତେବେଳେ ସୁଦ୍ଧା ଗୌରୀଶଙ୍କର ଅସୀମ ସାହାସର ସହିତ ସରକାରଙ୍କ ଅନ୍ୟାୟ କାର୍ଯ୍ୟକୁ ସମାଲୋଚନା କରିବାକୁ ଡରୁ ନ ଥିଲେ । ଏଠାରେ ତାହାଁର ଗୋଟିଏ ଉଦାହରଣ ଦିଆଗଲା ।

ଥରେ ଉତ୍କଳ ଦୀପିକାରେ କଟକ କଲେକ୍ଟର ସାହେବଙ୍କ ଅନୀତି ପ୍ରସଙ୍ଗରେ ଏକ ତୀବ୍ର ସମାଲୋଚନା ପ୍ରକାଶିତ ହୋଇଥିଲା । ସେ ଯୁଗରେ କଲେକ୍ଟର ସାହେବ ଥିଲେ ସମଗ୍ର ଜିଲ୍ଲାର ଦଣ୍ଡ ମୁଣ୍ଡର କର୍ତ୍ତା । ଗୌରୀଶଙ୍କର ସେହି ସାହେବଙ୍କର ସିରସ୍ତାଦାର କାମ କରୁଥିଲେ । ସମାଲୋଚନା ପଢ଼ି ସାହେବ ରାଗରେ ପ୍ରଜ୍ଜ୍ୱଳିତ ହୋଇ ଗୌରୀଶଙ୍କରଙ୍କୁ କୈଫିୟତ ମାଗିଲେ । ଅନ୍ୟ କେହି ହୋଇଥିଲେ ତ ଘାବରା ହୋଇ ଯାଇ ଥାଆନ୍ତା; ମାତ୍ର ଗୌରୀଶଙ୍କର ନିଃଶଙ୍କ ଭାବରେ ଉତ୍ତର ଦେଇଥିଲେ, "ଗୌରୀଶଙ୍କର ରାୟ ସମ୍ପାଦକ, ଏହି ସମାଲୋଚନା କଟେଗ ସମ୍ପୂ ପତ୍ରରେ ଲେଖି ଅଛନ୍ତି । କଲେକ୍ଟର ସାହେବଙ୍କ ସିରସ୍ତାଦାର ଗୌରୀଶଙ୍କର ଏହା ଲେଖି ନାହାନ୍ତି । ତେଣୁ କୈଫିୟତ ଦେବ କିଏ ?"

## ଗାର୍ହସ୍ଥ୍ୟ ଜୀବନ

ଗୌରୀଶଙ୍କର ଗୃହୀ ହିସାବରେ ଅତି ମାନାରେ ଅତିଥି ବତ୍ସଳ ଓ ବନ୍ଧୁପ୍ରିୟ ବ୍ୟକ୍ତି ଥିଲେ । ପ୍ରତ୍ୟହ ତାଙ୍କ ସହିତ ଅନେକ ଲୋକ ଦେଖା କରିବାକୁ ଆସୁଥିଲେ ଏବଂ ସେ ସମସ୍ତଙ୍କୁ ଭଲ ଭାବରେ ଚର୍ଚ୍ଚା କରୁଥିଲେ । ସେ ନିଜେ ଓଡ଼ିଶାର ଉନ୍ନତି ପାଇଁ ଯେପରି ଅକ୍ଳାନ୍ତ ପରିଶ୍ରମ କରୁଥିଲେ, ସେହିପରି କେତେକଣ ସହକର୍ମୀ ସଂଗ୍ରହ କରି ତାଙ୍କୁ ମଧ୍ୟ ଦେଶ କାମରେ ଖଟାଉଥିଲେ ଏବଂ ଅର୍ଥିକ ସାହାଯ୍ୟ କରୁଥିଲେ ।

ଏହି ସବୁ କାମ ପାଇଁ ଓଡ଼ିଆ ଜାତି ତାଙ୍କ ନିକଟରେ ଚିର ଋଣୀ ରହିବ । ଅନ୍ୟର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସେ ଏତେ କାମ କଲେ ସୁଦ୍ଧା ନିଜେ ଗାର୍ହସ୍ଥ୍ୟ ସୁଖ ଭୋଗ କରି ପାରି ନ ଥିଲେ । ଘର ଦ୍ୱାର ଧନ ସମ୍ପତ୍ତି ସେ ବହୁତ ଅର୍ଜନ କରି ଥିଲେ ସତ୍ୟ; ମାତ୍ର ପୁତ୍ର କଳତ୍ର ସୁଖ ତାଙ୍କ ଭାଗ୍ୟରେ ନ ଥିଲା । ୧୮୭୬ ଖ୍ରୀଷ୍ଟାବ୍ଦରେ ତାଙ୍କର ପତ୍ନୀ ବିୟୋଗ ହେବାରୁ ସେ ଅତି ମ୍ରିୟମାଣ ହୋଇ ପଡ଼ିଥିଲେ । ତାଙ୍କର ନିଜର ୩ ଗୋଟି କନ୍ୟା ଓ ୨ ଗୋଟି ପୁତ୍ର ଜନ୍ମିଥିଲେ । ପୁତ୍ର ଦୁହେଁ ଅଳ୍ପ ବୟସରେ ମରିଯାଇ ଥିବାରୁ ସେ ନିଜର ଭାଇମାନଙ୍କର ପିଲା ପିଲାଙ୍କୁ ପାଖରେ ରଖି ପାଠ ପଢ଼ାଇ ମଣିଷ କରିଥିଲେ । ଝିଅମାନେ ଅବଶ୍ୟ ଭଲ ଘରେ ବାହା ହୋଇଥିଲେ ଏବଂ ତାଙ୍କର ଚେଷ୍ଟାରେ ଜ୍ୱାଇଁମାନେ ଭଲ ଭଲ କାମ ମଧ୍ୟ ପାଇଥିଲେ । ବର୍ତ୍ତମାନ ତାଙ୍କର ସେହି କନ୍ୟାମାନଙ୍କର ପୁଅ ଝିଅ ଜୀବିତ ଅଛନ୍ତି । ଏହି ସବୁ ନାତି ନାତୁଣୀଙ୍କୁ ଗୌରୀଶଙ୍କର ନାନାବିଧ ସାହାଯ୍ୟ ମଧ୍ୟ ଯଥାମତେ କରୁଥିଲେ ।

ସେ ଦେଶ ପାଇଁ ଯେଉଁ କେତୋଟି ଅନୁଷ୍ଠାନ ସ୍ଥାପନ କରିବା ପାଇଁ ବ୍ୟବସ୍ଥା କରିଥିଲେ ସେଥି ମଧ୍ୟରୁ କେବଳ ମାତ୍ର ବିଧବା ଆଶ୍ରମଟି ପ୍ରତିଷ୍ଠିତ ହୋଇ ପାରିଲା ନାହିଁ ।

## ଧର୍ମ ବିଶ୍ୱାସ

ଗୌରୀଶଙ୍କର ହିନ୍ଦୁ କାୟସ୍ଥ ବଂଶରେ ଜନ୍ମ ଗ୍ରହଣ କରିଥିଲେ ସୁଦ୍ଧା ସନାତନ ଧର୍ମର ଉଦାରତା ଅକ୍ଷରେ ଅକ୍ଷରେ ପାଳନ କରି ଥିଲେ । ଏଥି ନିମିତ୍ତ ସେ କଟକ ଅଦ ବ୍ରାହ୍ମ ସମାଜରେ ସଭ୍ୟ ହୋଇଥିଲେ । ନିୟମିତ ଭାବରେ ପ୍ରତି ଶନିବାର ଉକ୍ତ ସମାଜର ଉପାସନାରେ ଯୋଗ ଦେଉଥିଲେ । ଖାଲି ଏତିକି ନୁହେଁ, ଏହି ବ୍ରାହ୍ମ ସମାଜକୁ ସେ ବହୁବାର ନିଜର ଶକ୍ତି ମତେ ଅର୍ଥ ସାହାଯ୍ୟ କରି ବଞ୍ଚାଇ ରଖିଥିଲେ ।

ଓଡ଼ିଶାର ପ୍ରସିଦ୍ଧ ସାହିତ୍ୟିକ ଗୋବିନ୍ଦ ରଥଙ୍କୁ ଗୌରୀଶଙ୍କର ଦାସ୍ ନାନା ଭାବରେ ସାହାଯ୍ୟ ଓ ଉତ୍ସାହ ଦେଉଥିଲେ ଏବଂ ତାଙ୍କର ନିର୍ଭୀକ ଲେଖାମାନ ଦୀପିକାରେ ଛପାଉ ଥିଲେ । ଗୋବିନ୍ଦ ରଥଙ୍କ ବିରୁଦ୍ଧରେ ଅନୀତ ଫୌଜଦାରୀ ମକଦ୍ଦମାରେ ମଧ୍ୟ ଗୌରୀଶଙ୍କର ପ୍ରଧାନ ପୃଷ୍ଠପୋଷକ ହୋଇ ତାଙ୍କୁ ରକ୍ଷା କରିଥିଲେ ।

ଓଡ଼ିଶାରେ ଦେଶ ମିଶଣ ଆନ୍ଦୋଳନ ହେବାର ବହୁବର୍ଷ ପୂର୍ବରୁ ବାମଣ୍ଡାର ମହାରାଜା ସୁଢ଼ଳଦେବ ଦେଶ ଭ୍ରମଣରେ ବାହାରି କଟକ ଆସିଥିଲେ । ସେଥର ଗୌରୀଶଙ୍କର କଟକ ପ୍ରିଣ୍ଟିଂ କମ୍ପାନୀ ହତାରେ ଏକ ବିରାଟ ଜନ ସଭାରେ ସମ୍ବର୍ଦ୍ଧନା କରିଥିଲେ ଏବଂ ଏହାର ପ୍ରତିକ୍ରିୟା ସ୍ୱରୂପ ବାମଣ୍ଡା ଓଡ଼ିଶାରେ ମିଶିବାପାଇଁ ଅଗ୍ରସର ହୋଇଥିଲା ।

ଆଜିକାଲି ଅନେକ ଲୋକ ମୋହବଶତଃ ବା ଚକ୍ଷୁଲଜ୍ଜାରେ ସତ୍ୟକୁ ବିକୃତ ଭାବରେ ପ୍ରକାଶ କରିଥାନ୍ତି; ମାତ୍ର ଗୌରୀଶଙ୍କର କଦାପି ଏପରି କରି ନ ଥିଲେ । ତାଙ୍କର ସ୍ପଷ୍ଟ ନୀତି ଶୃଙ୍ଖଳତା ସମସ୍ତ ସଦାଚଳନ ଏକାପରି ଥିଲା । ସେ ପ୍ରତିଦିନ ଏକ ନିୟମରେ ସମସ୍ତ କାର୍ଯ୍ୟ ନିର୍ଘଣ୍ଟ ଅନୁସାରେ କରୁଥିଲେ ଏବଂ ଯେଉଁ ସମୟରେ ଯେଉଁ କାମ କରିବେ ବୋଲି ନିର୍ଘଣ୍ଟ ବାନ୍ଧୁଥିଲେ ସହସ୍ର ବାଧାବିଘ୍ନ ଘଟିଲେ ମଧ୍ୟ ସେହି ସମୟାନୁବର୍ତ୍ତୀ ହୋଇ କାମ କରି ଯାଉଥିଲେ । ତାଙ୍କୁ ଲକ୍ଷ୍ୟ କରି ଉତ୍କଳର ମଧୁସୂଦନ ଲେଖିଥିଲେ—

"ଶୁଭକ୍ଷଣେ ଜନ୍ମ ତବ ଉତ୍କଳ ଉତ୍ସଙ୍ଗେ,
କର୍ମଯୁଗେ କର୍ମଯୋଗୀ ତେତେ ବର୍ଣ୍ଣ ସଙ୍ଗେ—
ଯୁକ୍ତି ନିତ୍ୟ ସୁସାହସେ ବିଶ୍ୱାସେ ବିନୟେ,
ସାଧୁଅଛ ସୁକର୍ମକଲ୍ପ ପୁଣ୍ୟ ସଞ୍ଚୟେ ।"

ମୁଦ୍ରାକର—ଶ୍ରୀ ପଦ୍ମଚରଣ ଦାଶ, ଶ୍ରୀ ସତ୍ୟନାରାୟଣ ପ୍ରେସ, କଟକ—୨